# ଜହ୍ନ ମାମୁଁ

ସଂସ୍ଥାପକ : 'ଚକ୍ରପାଣି'

ସଞ୍ଚାଳକ : ନାଗି ରେଡ୍ଡୀ

---

ସୁପ୍ରାଚୀନ ଗ୍ରନ୍ଥ 'ପଞ୍ଚତନ୍ତ୍ର । ଏକଦା କେତେ ଜଣ ଚଗଲା ରାଜପୁତ୍ରଙ୍କ ମନରେ ସ୍ଥିରତା ଓ ବିବେକ ବୁଦ୍ଧି ସଞ୍ଚାର କରିବା ଉଦ୍ଦେଶ୍ୟରେ ପଣ୍ଡିତ ବିଷ୍ଣୁଶର୍ମା ଯେଉଁସବୁ କାହାଣୀମାନ କହିଥିଲେ, ସେହିଗୁଡ଼ିକର ସମଷ୍ଟି ହେଲା 'ପଞ୍ଚତନ୍ତ୍ର'। ଆଜି ବି ଦେଶବିଦେଶରେ ଏସବୁ କାହାଣୀ ବ୍ୟାପକ ଭାବରେ ଆଦୃତ । ପ୍ରତି କାହାଣୀରେ ଲିପିବଦ୍ଧ ରହିଛି ବହୁ ଅଭିଜ୍ଞତା ଓ ଜ୍ଞାନର ବାଣୀ ।

'ପଞ୍ଚତନ୍ତ୍ର'ର ପ୍ରଥମ ଦୁଇ ଭାଗ 'ମିତ୍ରଭେଦ' ଓ 'ମିତ୍ରଲାଭ'ର କାହାଣୀମାନ ପୂର୍ବରୁ ପରିବେଷିତ ହୋଇଛି । ଏ ସଂଖ୍ୟାରୁ ତୃତୀୟ ଭାଗ 'କାକୋଲୂକୀୟମ୍'ର କାହାଣୀମାଳା ଆରମ୍ଭ ହେଲା ।

---

ବର୍ଷ : ୧୦ ଜୁନ୍ ୧୯୭୭ ଅଙ୍କ : ୧୨

ପ୍ରତି ସଂଖ୍ୟା : ଟ ୧.୨୫ :: ବାର୍ଷିକ ମୂଲ୍ୟ : ଟ ୧୫.୦୦





# ଅମର ବାଣୀ

ଆର୍ତ୍ତୋ ବା, ଯଦି ବା ଦୃପ୍ତଃ
ପରେଷାଂ ଶରଣାଗତଃ ।
ଅରିଃ ପ୍ରାଣାନ୍ ପରିତ୍ୟଜ୍ୟ
ରକ୍ଷିତବ୍ୟଃ କୃତାତ୍ମନା ॥ ୧ ॥

[ଦୃପ୍ତମାନ ଶତ୍ରୁ ବି ଯଦି ବିପଦରେ ପଡ଼ି ଶରଣାପନ୍ନ ହୁଏ, ତାକୁ ରକ୍ଷା କରିବା ମହତ୍ ଲୋକର କର୍ତ୍ତବ୍ୟ ।]

ସଚେଦ୍ ଭୟାଦ୍ୱା ମୋହାଦ୍ୱା
କାମଦ୍ୱାପି ନ ରକ୍ଷତି ।
ସ୍ୱୟା ଶକ୍ତ୍ୟା ଯଥାସତ୍ତ୍ୱମ୍
ତତ୍ପାପଂ ଲୋକଗର୍ହିତମ୍ ॥ ୨ ॥

[ଭୟ, ଅଜ୍ଞାନ ଇତ୍ୟାଦି ଯୋଗୁଁ ବିପଦରେ ପଡ଼ି ଯଦି କେହି ଶରଣାପନ୍ନ ହୁଏ, ତାକୁ ନିଜର ଶକ୍ତି ଦେଇ ରକ୍ଷା ନ କଲେ ଲୋକ ଚକ୍ଷୁରେ ତାହା ପାପ ବୋଲି ପରିଗଣିତ ହୁଏ ।]

ବିନଷ୍ଟଃ ପଶ୍ୟତସ୍ତସ୍ୟ
ରକ୍ଷିଣଶ୍ଶରଣାଗତଃ ।
ଆଦାୟ ସୁକୃତଂ ତସ୍ୟ
ସର୍ବଂ ଗଚ୍ଛେଦରକ୍ଷିତଃ ॥ ୩ ॥

[ଶରଣାଗତକୁ ଯିଏ ରକ୍ଷା ନ କରେ, ତା'ର ପୂର୍ବାର୍ଜିତ ପୁଣ୍ୟ ମଧ୍ୟ ବିନଷ୍ଟ ହୁଏ ।]

ଶରଣାଗତ ପ୍ରତି କର୍ତ୍ତବ୍ୟ





# ପଞ୍ଚତନ୍ତ୍ର

[ ୧ ]

(କାକୋଲୂକୀୟମ୍)

ପଣ୍ଡିତ ବିଷ୍ଣୁ ଶର୍ମା ରାଜକୁମାରମାନଙ୍କୁ କହିଲେ,

"ଶତ୍ରୁ ଯଦି ହଠାତ୍ ମିତ୍ର ଭଳି ଅଭିନୟ କରିବାକୁ ଆରମ୍ଭ କରିବ, ତେବେ ତା' ଉଦ୍ଦେଶ୍ୟ ପ୍ରତି ସତର୍କ ରହିବା ଉଚିତ। ସେହି ଭଳି କପଟ ମିତ୍ରର ସହାୟତାରେ କାଉ ପେଚାର ବସା ଜଳାଇ ଦେଇ ଥିଲା।"

"ସେ ଘଟଣା କ'ଣ ଆମେ ତ ଜାଣିନାହୁଁ !" ରାଜପୁତ୍ରମାନେ କହିଲେ।

ବିଷ୍ଣୁ ଶର୍ମା ସେଉଠୁ ଗଳ୍ପଟି ଶୁଣାଇଲେ :

* * *

ଦାକ୍ଷିଣାତ୍ୟର ଏକ ଘନ ଅରଣ୍ୟରେ ଥିଲା ବିଶାଳ ବଟ ବୃକ୍ଷଟାଏ। ସେଥିରେ ମେଘବର୍ଣ୍ଣ ନାମକ କାକ-ରାଜା ସଦଳବଳେ ବାସ କରୁଥିଲା।

ସେଠାରୁ ଏକ କ୍ରୋଶ ଦୂରବର୍ତ୍ତୀ ଗୋଟିଏ ପାର୍ବତ୍ୟ ଘାଟିର ଗୁମ୍ଫା ଭିତରେ ରହୁଥିଲା ଅରିମର୍ଦ୍ଦନ ନାମଧେୟ ପେଚକ-ରାଜା। ତା' ସହ ରହୁଥିଲେ ତା' ଅନୁଚରମାନେ। କାଉ-ଜାତି ସହ ସେମାନଙ୍କର ପ୍ରବଳ ଶତ୍ରୁତା ଥିଲା। ରାତିରେ କାଉଟିଏ ଦେଖିବା ମାତ୍ରେ ସେମାନେ ତାକୁ ଆକ୍ରମଣ କରୁଥିଲେ। ଫଳରେ ସବୁଦିନ ସକାଳ ବେଳକୁ ଗୋଟିଏ ଯୋଡ଼ିଏ କାକ ମରି ପଡ଼ିଥିବାର ଦେଖାଯାଏ।

ଦିନେ କାକ-ରାଜା ନିଜ ମନ୍ତ୍ରୀ ଓ ପରାମର୍ଶଦାତାମାନଙ୍କର ବୈଠକ ଡାକି କହିଲା, "ତମେମାନେ ଜାଣ ପେଚାଦଳ ଆମର କେତେ ଅନିଷ୍ଟ କରୁଛନ୍ତି। ତେବେ ରାତିରେହିଁ ସେମାନେ ଆମକୁ ଆକ୍ରମଣ କରନ୍ତି। ଦିନରେ ସେମାନଙ୍କୁ କିଛି ଦେଖାଯାଏ ନାହିଁ। ରାତି ପାହି ଆସିଲେ ସେମାନେ ଗୁମ୍ଫାରେ ଆଶ୍ରୟ ନିଅନ୍ତି। କୁହାଯାଏ

ଶତ୍ରୁ ଓ ବ୍ୟାଧିକୁ ମୂଳରୁ ନିପାତ କରିବା ବିଧେୟ । ତେଣୁ ଆମକୁ ଏ ସମସ୍ୟାର ଏକ ସବୁଦିନିଆ ନିଷ୍ପତ୍ତି କରି ଦେବାକୁ ପଡ଼ିବ । ଛଅ ପ୍ରକାର ଉପାୟରେ ଏ ବିପଦରୁ ରକ୍ଷା ମିଳିପାରେ । ଯଥା : ଶତ୍ରୁ ସହ ବୁଝାମଣା କରିବା; ଆମେ ଅନ୍ୟ ସ୍ଥାନକୁ ଚାଲିଯିବା; ଆମ ନିରାପତ୍ତା ବ୍ୟବସ୍ଥା ଦୃଢ଼ କରିବା; କୌଣସି ଶକ୍ତିଶାଳୀ ଜୀବ ସହ ମିତ୍ରତା କରିବା କିମ୍ବା କୌଣସି କୌଶଳ ଅଥବା ପ୍ରତାରଣାର ଆଶ୍ରୟ ନେବା । କ'ଣ କରିବା କୁହ ।"

ବୈଠକରେ ଥିଲେ ଉଜ୍ଜୀବୀ, ସଞ୍ଜୀବୀ, ଅନୁଜୀବୀ, ପ୍ରଜ୍ଜୀବୀ ଏବଂ ଚିରଞ୍ଜୀବୀ ନାମକ ମନ୍ତ୍ରୀ ତଥା ସ୍ଥିରଜୀବୀ ନାମକ ଜନୈକ ବୃଦ୍ଧ ପରାମର୍ଶଦାତା ।

ଉଜ୍ଜୀବୀ କହିଲା, "ରାଜା ! ଆମ ଶତ୍ରୁପକ୍ଷ ବଡ଼ ଶକ୍ତିଶାଳୀ । ଆମେ ସେମାନଙ୍କ ତୁଳନାରେ ଦୁର୍ବଳ । ଯୁଦ୍ଧର ଫଳାଫଳ କ'ଣ ହେବ ସେ କଥା କହି ହେବ ନାହିଁ । ମୋର ପ୍ରସ୍ତାବ ହେଲା, ପେଚକ ଜାତି ସହ ମିଳାମିଶା କରିନେବାହିଁ ଉଚିତ ।"

ଏହା ପରେ ସଞ୍ଜୀବୀ କହିଲା, "ଯେଉଁ ଶତ୍ରୁ କ୍ରୂର ଓ ନିଷ୍ଠୁର, ତା' ସହ ମିଳାମିଶା କରିବା କିପରି ? ସେମାନେ ଆମ ସଦ୍‌ଭାବର ସୁଯୋଗ ନେଇ ଆମର ସର୍ବନାଶ କରିବାକୁ ସକ୍ଷମ । ତେଣୁ ମୋର ମନେ ହୁଏ ଯୁଦ୍ଧହିଁ ଶ୍ରେୟସ୍କର । ଯୁଦ୍ଧ ଏଡ଼ାଇବାକୁ ଚେଷ୍ଟା କରିବା ଆତ୍ମଘାତୀ ନୀତି, ସନ୍ଦେହ ନାହିଁ ।"



"ଆମ ଶତ୍ରୁ ଯେପରି କ୍ରୂର, ସେହିପରି ବଳଶାଳୀ ମଧ୍ୟ । ସେମାନଙ୍କ ସହ ଆପୋଷ ମିଳାମିଶା ଯେତିକି ବିଡ଼ମ୍ବନା, ଯୁଦ୍ଧ ମଧ୍ୟ ସେତିକି ବୃଥା । ବରଂ ଆମେ ଏଠାରୁ ଆମ ବସତି ଉଠାଇ ନେଇ ଚାଲିଯିବାହିଁ ଉଚିତ ହେବ । ପେଚକ ଜାତିର ପଡ଼ୋଶୀ ହୋଇ ରହିଲେ ବିପଦ ଲାଗି ରହିଥିବ । ଆମେ ସାମୟିକ ଭାବରେ ଅନ୍ୟତ୍ର ଯାଇ କିଛିଦିନ ରହି ପୁଣି ଅନୁକୂଳ ପରିସ୍ଥିତିରେ ଏଠାକୁ ଫେରି ଆସି ପାରିବା ।" କହିଲା ଅନୁଜୀବୀ ।

"ନିଜ ଘର ଛାଡ଼ି ଅନ୍ୟତ୍ର ଯିବା ଅନୁଚିତ । ଆମ ଘରହିଁ ଆମର ଆଶ୍ରୟ । ପାଣି ଭିତରେ ଥାଇ ମଗର ହାତୀକୁ ବି ହଟାଇ ଦେଇପାରେ । କିନ୍ତୁ ସ୍ଥଳ ଭାଗକୁ ଆସିଲେ ଗୋଟାଏ କୁକୁରର ବି ସେ କିଛି କରିପାରିବ ନାହିଁ । ଥରେ ଏ ଘର ଛାଡ଼ି ଗଲେ ଆଉ ଏଠାକୁ ଫେରିବା ସହଜ ହେବ ନାହିଁ । ଆମେ ଏକତାବଦ୍ଧ ହୋଇ କାମ କଲେ କିଏ ଆମର କ'ଣ କରିବ ?" ପ୍ରଜୀବୀ କହିଲା ।

"ଆମର ଲୋଡ଼ା କୌଣସି ଶକ୍ତିଶାଳୀ ପ୍ରାଣୀ ସହ ମିତ୍ରତା । ମିତ୍ରର ସାହାଯ୍ୟ ଲୋଡ଼ିବାରେ ଅନ୍ୟାୟ କିଛି ନାହିଁ । ସର୍ବଧ୍ୱଂସୀ ଅଗ୍ନି ମଧ୍ୟ ପବନର ସାହାଯ୍ୟକୁ ଅସ୍ୱୀକାର କରିପାରେ କି ? ଆମେ ଏଇଠାରେ ରହି କାହାର ସହ ମିତ୍ରତା କରିବା ଆବଶ୍ୟକ । ତାହାରି ଦ୍ୱାରା ଆମ ସମସ୍ୟାର ସମାଧାନ ହେବ ।" ଚିରଞ୍ଜୀବୀ ବୁଝାଇଲା । ଏହିପରି ଭାବରେ ଜଣ ଜଣ ହୋଇ ମନ୍ତ୍ରୀମାନେ ନିଜ ନିଜ ବିଚାର ବ୍ୟକ୍ତ କଲେ ଓ ରାଜାଙ୍କ ସିଦ୍ଧାନ୍ତକୁ ଅପେକ୍ଷା କଲେ ।

ମନ୍ତ୍ରୀମାନଙ୍କ ପରାମର୍ଶ ଶୁଣି ସାରିବା ଉତ୍ତରୁ କାକ-ରାଜା ମେଘବର୍ଣ୍ଣ ସ୍ଥିରଜୀବୀକୁ ପଚାରିଲା, "ଆପଣ ବୃଦ୍ଧ ତଥା ବୁଦ୍ଧିମାନ । ଦୟା କରି ଆପଣ କିଛି ପରାମର୍ଶ ଦିଅନ୍ତୁ ।"



ସଂସାରର ବିସ୍ମୟ

# ଶସ୍ୟ ଦେବୀଙ୍କ ଆରାଧନା

ଦୂର ଅତୀତରେ ମନୁଷ୍ୟ ଯେତେବେଳେ ଶସ୍ୟ ଅମଳ କରି ଶିଖିଲା ଓ ଯାଯାବର ଅଭ୍ୟାସ ଛାଡ଼ି ସ୍ଥାୟୀ ଭାବରେ ଘରଦ୍ୱାର କରି ବସବାସ କଲା, ସେ ଶସ୍ୟ ଦେବୀଙ୍କୁ ଆରାଧନା କଲା । ସିରିଆର ଏକ ପ୍ରାଚୀନ ରାଜକୀୟ ସମାଧି କ୍ଷେତ୍ରରୁ ପ୍ରାପ୍ତ ଗୋଟିଏ ବାକ୍ସର ଢାଙ୍କୁଣୀ ଉପରେ ଶସ୍ୟ ଦେବୀଙ୍କର ଏହି ଚିତ୍ର ଅଙ୍କିତ ଅଛି ।





# ମାୟା ସରୋବର

[ ୧୭ ]

[ଜୟଶୀଳ ପ୍ରେରିତ ତୀର ନରବାନରର ଦେହରେ ଲଗିଲା । କୃପାଣଜିତ ବୁଝିଲା ଯେ ତୀରନ୍ଦାଜ ଆଉ କେହି ନୁହେଁ, ତା'ର ଶତ୍ରୁ ଜୟଶୀଳ । ପର ମୁହୂର୍ତ୍ତରେହିଁ କୃପାଣଜିତ୍ ଶଙ୍କର ସିଂହର ଅନୁଚରମାନଙ୍କ ସହ ଗ୍ରାମ ମଧ୍ୟକୁ ପଳାଇଗଲା । ପରେ ପରେ ଶଙ୍କରସିଂହ ଓ କୃପାଣଜିତ୍ ଭିତରେ କଳି ହେଲା । କୃପାଣଜିତ୍‌ର ନିର୍ଦ୍ଦେଶରେ ନରବାନର ଶଙ୍କରସିଂହ ଆଡ଼କୁ ଝପଟି ଗଲା । ତାପରେ···]

ଶଙ୍କରସିଂହର ଅନୁଚରମାନେ ଅସ୍ତ୍ରଶସ୍ତ୍ର ଧରି କୃପାଣଜିତ୍ ଆଡ଼କୁ ଅଗ୍ରସର ହେବାର ଦେଖି କୃପାଣଜିତ୍ ଭୟଭୀତ ହେଲା । ଯେତେହେଲେ ବି ବାମନଜାତି ଭିତରେ ସେ ଏକୁଟିଆ ପଡ଼ିଯାଇଥିଲା । ଆଉ ବାମନମାନେ ନିଜ ନେତାର ନିର୍ଦ୍ଦେଶ ମାନି ପ୍ରାଣ ଦେବାକୁ ବି ପ୍ରସ୍ତୁତ ଥାଆନ୍ତି ।

ଅବସ୍ଥା ଦେଖି କୃପାଣଜିତ୍ ତତ୍କ୍ଷଣାତ୍ ନିଜ କର୍ତ୍ତବ୍ୟ ନିରୂପଣ କରିପକାଇଲା । ସେ ଅଳ୍ପ ହସି ବାମନମାନଙ୍କୁ କହିଲା, "ହେଲା, ହେଲା, ଆଉ ଅଗ୍ରସର ହେବା ଦରକାର ନାହିଁ । ଭୁଲି-ଯାଅନା ଯେ ମୁଁ ତୁମ ମିତ୍ର । ନରବାନରକୁ ତୁମ ନେତା ଆଡ଼କୁ ଝପଟାଇ ଦେଇ ସେ ଜନ୍ତୁକୁ ମୁଁ କେତେଦୂର ବଶୀଭୂତ କରି ରଖିଛି,



ବିପଦହିଁ ଡାକି ଆଣିଛି । ସେ ଅନୁଚରମାନଙ୍କୁ ଅନାଇ କଣ୍ଠସ୍ୱର ନମ୍ର କରି କହିଲା, "ମୁଁ ଯାହା କହୁଛି, ତାହା ମନ ଦେଇ ଶୁଣ । ସେ ପ୍ରକାଣ୍ଡ ମଣିଷଟା ତା' ପୋଷା ନରବାନରର ପାଖରେ ଠିଆ ହୋଇ ଆମକୁ ଲକ୍ଷ୍ୟ କରୁଛି । ଆମେ ତା' ସହ କି ପ୍ରକାର ବ୍ୟବହାର କରିବାକୁ ଯାଉଛୁଁ, ତାହାହିଁ ସେ ବାରିବାକୁ ଚେଷ୍ଟା କରୁଛି । ତା' ସହ ଲଢ଼ି ଆମେ ବର୍ତ୍ତିପାରିବୁ ନାହିଁ, ଏକଥା ଠିକ୍ । ତେଣୁ ପ୍ରଥମେ କୌଶଳ କ୍ରମେ ତା' ତରବାରି ଓ ତା' ନରବାନରଠାରୁ ତାକୁ ବିଚ୍ଛିନ୍ନ କରିଦେବାକୁ ପଡ଼ିବ । ସେଥିରେ ଯଦି ଆମର କିଛି ଲୋକ ମରନ୍ତି, ତଥାପି କ୍ଷତି ନାହିଁ । ତାକୁ ନ ମାରିଲେ ଆମକୁ ସର୍ବଦା ଆତଙ୍କିତ ହୋଇ ରହିବାକୁ ପଡ଼ିବ ।"

"ଆପଣ ଯାହା କହୁଛନ୍ତି, ତାହା ଠିକ୍ । କିନ୍ତୁ ଆମ ଯୋଜନା କାର୍ଯ୍ୟକାରୀ ହେବା କ'ଣ ସହଜ ?" ଜଣେ ଅନୁଚର ମନ୍ତବ୍ୟ ଦେଲା ।

"ଏ ପ୍ରକାଣ୍ଡ ମଣିଷ ମରିଗଲେ ତେଣିକି ବାମନ-ରାଣୀର ସୈନ୍ୟମାନେ ତ ଆମକୁ ଖତମ କରିଦେବେ । ପୁଣି ଦୁଇଜଣ ରାକ୍ଷସ ଭଳି ମ[illegible] ଆସି ରାଣୀକୁ ସାହାଯ୍ୟ ଦେଉଛନ୍ତି !" ଆଉ ଜଣେ ଅନୁଚର କହିଲା ।

ଶଙ୍କରସିଂହ ଉଭୟ ଅନୁଚରଙ୍କ ଆଡ଼କୁ କ୍ରୋଧଭରା ଦୃଷ୍ଟିରେ ଅନାଇ କହିଲା, "ମରିବାକୁ

କେବଳ ସେତକ ଦେଖାଇ ଦେବାକୁ ଚାହୁଁ-ଥିଲା ।"

ଏତକ କହି କୃପାଣଜିତ୍ ତା' ନରବାନରକୁ ଶଙ୍କରସିଂହ ଆଡ଼କୁ ଫେରାଇ ଆଣିଲା ।

ଶଙ୍କରସିଂହ ଉତ୍ତେଜନାରେ ଥରି ଥରି କିଛି ବାଟ ପଳାଇଯାଇ ଗୋଟାଏ ଶୁଖିଲା କାଠ ଉପରେ ବସିଲା । ଅନୁଚରମାନେ ତାକୁ ବେଷ୍ଟନ କରି ପଚାରିଲେ, "ଏଥର କୁହନ୍ତୁ, ଆମର କର୍ତ୍ତବ୍ୟ କ'ଣ ?"

ଶଙ୍କରସିଂହ ସେତେବେଳକୁ ହୃଦୟଙ୍ଗମ କରିଥାଏ ଯେ କୃପାଣଜିତ୍ ଓ ତା' ନର-ବାନରକୁ ନିଜ ସହାୟତା ପାଇଁ ଆଣି ସେ

ହେଲେ ଆମେ ନିଜ ଜାତି ଲୋକଙ୍କ ହାତରେ ନ ମରି ଗୋଟାଏ ବିଦେଶୀ ହାତରେ କାହିଁକି ମରିବୁ ? ମୋର ମନେହୁଏ, ରାଣୀ ପାଖକୁ ଯାଇ ଆମ ତରଫରୁ ସନ୍ଧି ପାଇଁ ନିବେଦନ କଲେ ହୁଏତ କ୍ଷମା ମିଳିବ । ମୋ ଆଗରେ ଅନ୍ୟ କୌଣସି ଉପାୟ ଦିଶୁନାହିଁ ।"

"ତେବେ ବିଳମ୍ବ କରିବା ଦରକାର କ'ଣ ? ଜରୁରୀ କାର୍ଯ୍ୟ ଶୀଘ୍ର ହିଁ ହେବା ଆବଶ୍ୟକ ।" ଜଣେ ଉଚ୍ଚ କଣ୍ଠରେ କହିଲା ।

ଶଙ୍କରସିଂହ ପାଖରେ ପଡ଼ିଥିବା ଲାଠି ଉଠାଇନେଇ ସେ ଲୋକକୁ ଦୁଇଥର ବାଡ଼େଇ-ଦେଲା । ଦୂରରେ ଠିଆହୋଇ ସବୁ ଦେଖୁଥିବା କୃପାଣଜିତ୍ ଭାବିଲା ଯେ ତାହାର ବିରୁଦ୍ଧରେ ହିଁ କୌଣସି ଷଡ଼ଯନ୍ତ୍ର ଚାଲିଛି । ସେ ନରବାନରଙ୍କୁ ଧରି ସେମାନଙ୍କ ପାଖକୁ ଆସି ବିକଟ ଭଙ୍ଗୀରେ ଧମକ ଦେଇ ପଚାରିଲା, "କ'ଣ ଷଡ଼ଯନ୍ତ୍ର ଚାଲିଛି ? ଅତର୍କିତରେ ମୋ ଉପରେ ଆକ୍ରମଣ କରିବ, ନୁହେଁ ? ସତକଥା କହିଦେଲେ ବରଂ ମୁଁ ସବୁ ଭୁଲିଯିବି ।"

ଶଙ୍କରସିଂହ ଦେଖିଲା, ତା' ଅନୁଚରମାନେ କ୍ରମଶଃ ଉତ୍ତେଜିତ ହୋଇ ଉଠୁଛନ୍ତି । ହୁଏତ ଜୀବନକୁ ପାଣି ଛଡ଼ାଇ ସେମାନେ ହଠାତ୍ କୃପାଣଜିତ୍‌କୁ ଆକ୍ରମଣ କରିବେ । ସେ ତେଣୁ ହାତ ଉଠାଇ ଅନୁଚରମାନଙ୍କୁ ଶାନ୍ତ ରହିବାକୁ ନିର୍ଦ୍ଦେଶ ଦେଲା ଓ ଉଠିପଡ଼ି କୃପାଣଜିତ୍‌କୁ କହିଲା, "ମହାଶୟ ! ଆମେ କୌଣସି ଷଡ଼ଯନ୍ତ୍ର






କରୁନାହୁଁ । ଆମ ଅବସ୍ଥା ଏପରି ଯେ ବାମନ-ରାଣୀ ହେଉ ବା ଆପଣ ହୁଅନ୍ତୁ, ଯିଏ ଇଚ୍ଛା କରିବେ ସେ ଆମକୁ ବଧ କରିପାରିବେ । ତେଣୁ ଆମେ ଭାବୁଥିଲୁଁ ସୂର୍ଯ୍ୟାସ୍ତ ପୂର୍ବରୁହିଁ ଆମ ପଲ୍ଲୀ ଛାଡ଼ି ଆମେ ବଣ ଭିତରକୁ ପଳାଇଯିବୁଁ ।"

ଶଙ୍କରସିଂହ ମୁହଁରୁ ଏ କଥା ଶୁଣି କୃପାଣଜିତ୍ ଡରିଗଲା । ଯଦି ଏମାନେ ତାକୁ ଏକୁଟିଆ ଛାଡ଼ି ବଣ ଭିତରକୁ ପଳାଇଯିବେ, ତେବେ ତା'ର ଭୟଙ୍କର ଶତ୍ରୁ ଜୟଶୀଳ ଅଚିରେ ତାକୁ ମାରି ପକାଇବ ।

କୃପାଣଜିତ୍ ତେଣୁ ନମ୍ରଭାବରେ କହିଲା, "ଶଙ୍କରସିଂହ ! ତୁମେ ବିଶ୍ୱାସ କର, ମୋ ହାତ ତୁମର ଉପକାର ଛଡ଼ା କଦାପି ଅପକାର ହେବ ନାହିଁ । ତୁମ ଶତ୍ରୁ ବାମନ-ରାଣୀ ତଥା ତା'ର ସାହାଯ୍ୟକାରୀ ମଣିଷ ଦୁଇଜଣଙ୍କୁ ମୁଁ ସୂର୍ଯ୍ୟାସ୍ତ ପୂର୍ବରୁହିଁ ବଧ କରିବି । ଆଜ ମଧ୍ୟରାତ୍ରିବେଳକୁ ତୁମର ଦଳେ ସୈନ୍ୟ ଆସି ମୋତେ ରାଣୀର ପଲ୍ଲୀଆଡ଼କୁ ବାଟ ଦେଖାଇ ନେଇଯିବା ଆବଶ୍ୟକ । ଶତ୍ରୁପକ୍ଷ ସେତେବେଳେ ଶୋଇଥିବେ । ସେତିକବେଳେ ମୁଁ ଓ ମୋର ନରବାନର ସମସ୍ତଙ୍କୁ ଶେଷ କରିଦେବୁଁ । ତେଣିକି ଏ ସମଗ୍ର ମୁଲକର ରାଜା ତୁମେହିଁ ହେବ । ଯେତେଦୂର ଆଖି ଯାଉଛି, ଏ ବଣ, ପାହାଡ଼, ସବୁ ହେବ ତୁମର ରାଜ୍ୟର ଅନ୍ତର୍ଭୁକ୍ତ । ବୁଝିଲ ? ମହାରାଜ ଶଙ୍କରସିଂହଙ୍କର ଜୟ !" ଏହା କହୁଁ କହୁଁ କୃପାଣଜିତ୍ ତା' ତରବାରି ମୁଠିରେ ନରବାନରକୁ ବାଡ଼େଇଦେଲା ।

କ୍ରୋଧରେ ନରବାନର ଭୀଷଣ ଗର୍ଜନଟାଏ ଛାଡ଼ିଲା । କୃପାଣଜିତ୍‌କୁ ଧରିପକାଇବା ପାଇଁ ସେ ଅଗ୍ରସର ହେଲାବେଳକୁ କୃପାଣଜିତ୍ ହାତରେ ତରବାରି ଝଟକି ଉଠିବାର ଦେଖି ସେ ପଛେଇ ଗଲା ।

ଶଙ୍କରସିଂହ ଖୁସି ହୋଇ ମୁଣ୍ଡ ହଲାଇ କହିଲା, "ମହାଶୟ ! ମୋର ଧାରଣା, ଆପଣ ଯଦି ଆପଣଙ୍କ ପୋଷା ଜୀବଟି ପ୍ରତି ଟିକିଏ ଦରଦପୂର୍ଣ୍ଣ ବ୍ୟବହାର କରନ୍ତେ, ତେବେ ସେ




କେବେବି ଆପଣଙ୍କ ଉପରେ ଅସନ୍ତୋଷ ପ୍ରକାଶ କରନ୍ତି ନାହିଁ ।"

"ଇଏ ମୋର ଗୁଲାମ । ଯା ପ୍ରତି ପୁଣି ଦରଦ କ'ଣ ? ସେମିତି କଲେ ଇଏ ମୋ ଉପରେ ପ୍ରଭୁତ୍ୱ ବିସ୍ତାର କରିବ । ଏ ଦୁନିଆର ସମସ୍ତେ ଦଣ୍ଡକୁ ଡରନ୍ତି । ଯିଏ ଶାସନ କରେ, ସିଏ ଲାଠି ବଳରେହିଁ କରେ । ଆଚ୍ଛା, କହିଲ, ଆମ ଖାଇବା ବ୍ୟବସ୍ଥା କିଛି ହୋଇଛି କି ? ମୁଁ ମୋ କୁଡ଼ିଆକୁ ଯାଉଛି ।" ଏହି କହି କୃପାଣଜିତ୍ ସେଠାରୁ ଚାଲିଯିବାକୁ ଉଦ୍ୟତ ହେଲା ।

"ଆପଣଙ୍କ ଖାଦ୍ୟ ସେଠାରେ ପ୍ରସ୍ତୁତ ହୋଇ ରହିଛି ।" ଶଙ୍କରସିଂହ ଜଣାଇଲା ।

ପଲ୍ଲୀଠୁଁ ଅଳ୍ପଦୂରରେ ତା' ପାଇଁ ନିର୍ମିତ କୁଡ଼ିଆ ପାଖରେ ଯାଇ କୃପାଣଜିତ୍ ପହଞ୍ଚିଲା ଓ ପାଟି କରି କହିଲା, "ସୂର୍ଯ୍ୟାସ୍ତ ଯାଏ ମୁଁ ଶୋଇବି । କେହି ଯେପରି ସେଥିରେ ବିଘ୍ନ ଘଟାଇବେ ନାହିଁ । ମୋତେ ଆଜି ରାତିକ ଉଜାଗର ରହିବାକୁ ପଡ଼ିବ । ଠିକ୍ ମଧ୍ୟରାତ୍ରି ବେଳକୁ ଶତ୍ରୁ ସଂହାର କରିବି ।"

କୃପାଣଜିତ୍ ନିଜ କୁଡ଼ିଆକୁ ଚାଲିଯିବା ଉତ୍ତାରୁ ଶଙ୍କରସିଂହ ନିଜ ଅନୁଚରବର୍ଗଙ୍କୁ କହିଲା, "ମନଦେଇ ମୋ କଥା ଶୁଣ । ଏ ନରବାନର ବିପଦବେଳେ କେବେ ହେଲେ କୃପାଣଜିତ୍‌କୁ ସାହାଯ୍ୟ କରିବ ନାହିଁ । ସେ ପଳାଇଯିବ । ବାକି ରହିଲା କୃପାଣଜିତ୍‌ର ତରବାରି କଥା । ସେ ଗୋଟିକ ଚୋରାଇ ଆଣିବାକୁ ପଡ଼ିବ ।" ଏହା କହି ଶଙ୍କରସିଂହ ତା'ର ଚାରି ପାଞ୍ଚଜଣ ବିଶ୍ୱସ୍ତ ଯୁବକ ଅନୁଗତଙ୍କୁ ଧରି ନିଜ କୋଠରୀକୁ ଚାଲିଗଲା ।

ତେଣେ ଦୁଇ ତିନିଘଣ୍ଟା ପରେ ହଠାତ୍ କୃପାଣଜିତ୍‌ର ନିଦ ତୁଟିଗଲା । ପାଖରେ କେହି ନ ଥିଲେ ମଧ୍ୟ ସେ ପାଟିକରି ପଚାରିଲା, "ଆବେ, ଏତେ ତେଲ ଗନ୍ଧ କୁଆଡ଼ୁ ଆସୁଛି ? କେଉଁଠାରେ କିଏସେ ତେଲ କଳସି ଢାଳି ଦେଲା କି ? କଥା କ'ଣ ?"

ବାହାରୁ ଜଣେ କିଏ ଉତ୍ତର ଦେଲା, "ଆଜ୍ଞା,



ବ୍ୟସ୍ତ ହେବେ ନାହିଁ । ନିମ୍ବତେଲ ସହ ଅନ୍ୟ ଏକ ତେଲ ମିଶାଇ ପ୍ରସ୍ତୁତ କରା ଯାଇଥିବା ଔଷଧ ଆମେ ଆପଣଙ୍କ କୁଡ଼ିଆ ଚାରିପଟେ ଛିଞ୍ଚି ଦେଉଛୁ । ଏହା ହେଲେ ମଶା, ମାଛି, ପୋକ ଜୋକ ଆପଣଙ୍କୁ ରାତିରେ ହରକତ କରିବେ ନାହିଁ । ଆମ ନେତାଙ୍କ ଆଦେଶରେ ଏହା କଲୁଁ । ଏହା ଦ୍ୱାରା ଆପଣ ସୁଖରେ ନିଦ୍ରା ଯାଇ ପାରିବେ । ଆଉ କିଛି ନୁହେଁ ।"

"ବେଶ୍, ବେଶ୍ ଭଲ କଥା ।" ଏହା କହି କୃପାଣଜିତ୍ କଡ଼ ଲେଉଟାଇ ଗାଢ଼ ନିଦରେ ଶୋଇପଡ଼ିଲା । କିନ୍ତୁ କୁଡ଼ିଆ ଭିତରେ ବନ୍ଧା ରହିଥିବା ନରବାନର ସେ ତେଲ ଗନ୍ଧ ସହ୍ୟ କରି ନ ପାରି ଜଂଜିର ଟଣା ଭିଡ଼ା କରି ସେଠାରୁ ପଳାଇବାକୁ ଚେଷ୍ଟା କରୁଥାଏ ।

କୃପାଣଜିତ୍ ବିଶ୍ରାମସ୍ଥଳର ଶୋଇପଡ଼ିବା ଉତ୍ତାରୁ ନିଜ ବିଶ୍ୱସ୍ତ ଅନୁଚରମାନଙ୍କୁ ଧରି ଶଙ୍କରସିଂହ ଆସି ସେଠାରେ ପହଞ୍ଚିଲା । ତା' ଇଙ୍ଗିତରେ ଜଣେ ଅନୁଚର ଧୀରେ ଧୀରେ କୁଡ଼ିଆ ଦ୍ୱାର ଖୋଲି ଭିତରେ ପଶି କୃପାଣଜିତ୍‌ର ତରବାରିଟି ଉଠାଇ ଧରି ପଳାଇଆସିଲା ।

ଶଙ୍କରସିଂହ ତରବାରି ଓଲଟପାଲଟ କରି ଦେଖି ସେ ଖଣ୍ଡିକ ନିଜ ଅନୁଚର ହାତରେ ଦେଇ କହିଲା, "କୁଡ଼ିଆ ହଠାତ୍ ଜଳିଉଠିଲେ ଆମ ପ୍ରତାପଶାଳୀ ଅତିଥିଙ୍କ ପ୍ରତାପ ଯିବ । ତେବେ ଏ ତରବାରି ମୁଁ ଟେକିପାରିବି ସିନା, ଚଳାଇ ପାରିବିନାହିଁ । ଏହାକୁ କେଉଁଠାରେ ହେଲେ ଲୁଚାଇ ରଖ ।"

ପରେ ପରେ ପୂର୍ବ ଯୋଜନା ଅନୁସାରେ ଆଉ କେତେଜଣ ଅନୁଚର ମଶାଲ ଧରି ସେଠାରେ ଆସି ପହଞ୍ଚିଗଲେ । ସେଥିରୁ କେତେଜଣ ମେଣ୍ଢା ଉପରେ ବସି ଆସିଥିଲେ । ସମସ୍ତଙ୍କୁ ଥରେ ଦେଖିନେଇ ଶଙ୍କରସିଂହ କହିଲା, "ଆମ ଜୀବନ ବିପନ୍ନ ହେଲେ ମଧ୍ୟ ଆମେ ବର୍ତ୍ତମାନ ଏ ପ୍ରକାଣ୍ଡ ମଣିଷଟାକୁ ମାରିବୁଁ । ଆଉ ବିଳମ୍ବ ନ କରି କୁଡ଼ିଆ ଚାରିପଟେ ନିଆଁ ଲଗାଇ ଦିଅ । ଯଦି ଲୋକଟା ବାହାରି ଆସିବ; ତେବେ ତାକୁ ମଶାଲ

ଦ୍ୱାରା ଆକ୍ରମଣ କରିବ । ନରବାନର ଜଂଜିର ଛିଡ଼ାଇ ପାରିବ ନାହିଁ କି ବାହାରି ପାରିବ ନାହିଁ । ପୋଡ଼ି ମରିବ ।”

ଅନୁଚରମାନେ ଯଥା ନିର୍ଦ୍ଦେଶ କୁଡ଼ିଆ ଘରପଟେ ଅଗ୍ନି ସଂଯୋଗ କରିଦେଲେ । ଆଗରୁ ତ କୁଡ଼ିଆ ତେଲରେ ଓଦା ହୋଇ ରହିଥିଲା । ନିଆଁ ଘିହୁଁ ଘିହୁଁ ଦାଉ ଦାଉ ହୋଇ ଜଳି ଉଠିଲା ।

ନିଆଁ ଝାସରେ କୃପାଣଜିତ୍‌ର ନିଦ ଭାଙ୍ଗି-ଗଲା । ସେ ଆଖି ଖୋଲି ସବୁ ଦେଖି ଚିତ୍କାର କଲା, “ଆଚ୍ଛା ! ମୋତେ ଦଗା ଦିଆ ଯାଇଛି ! ବେଶ୍ । ମୁଁ ଏହାର ପ୍ରତିଶୋଧ ନେବି ।”

ଏହା କହି ସେ ତରବାରି ଅଣ୍ଡାଳିବାକୁ ଯାଇ ସେ ଖଣ୍ଡିକ ଆଉ ପାଇଲା ନାହିଁ ।

କିଂକର୍ତ୍ତବ୍ୟବିମୂଢ଼ ହୋଇ କୃପାଣଜିତ୍ ଠିଆ ହୋଇ ରହିଲା । ହଠାତ୍ ଜଳନ୍ତା ଘରରୁ ଖଣ୍ଡିଏ ତା’ ଉପରେ ପଡ଼ିଲା । ତେଣେ ନର-ବାନର ଭୟଙ୍କର ଗର୍ଜନ କରି ନିଜର ସବୁ ଶକ୍ତି ଖଟାଇ ଜଂଜିର ଛିଡ଼ାଇ ପକାଇଲା ଓ କୃପାଣଜିତ୍‌କୁ ଆକ୍ରମଣ କରିବାକୁ ବାହାରିଲା । କିନ୍ତୁ ନିଆଁ ଧାସରେ ଛଟପଟ ହୋଇ ସେ ଦ୍ୱାର ଆଡ଼କୁ ମୁହାଁଇଲା । କୃପାଣଜିତ୍ ଦେଖିଲା ତା ମୃତ୍ୟୁ ନିଶ୍ଚିତ । ତେଣୁ ସେ ହଠାତ୍ ନର-ବାନର ଅଣ୍ଟାରେ ଲାଗିଥିବା ଜଂଜିରକୁ ଧରି ଓହଳି ପଡ଼ିଲା । ନରବାନର ଗୋଟାଏ ଧକ୍-କାରେ କବାଟ ଖୋଲି ପଦାରେ ଆସି ଛିଡ଼ା



ହେଲା । ତାକୁ ଜାବୁଡ଼ି ଧରି କୃପାଣଜିତ୍ ବି ପଦାକୁ ଆସିପାରିଲା ।

ହଠାତ୍ ସେ ଦୁଇଜଣ ବାହାରି ଆସିବାର ଦେଖି ବାମନମାନେ ଆତଙ୍କିତ ହୋଇଗଲେ । ସେମାନେ ପଳାଇବାକୁ ଉଦ୍ୟତ ହୁଅନ୍ତେ ଶଙ୍କରସିଂହ ସେମାନଙ୍କୁ କହିଲା, "ନରବାନରକୁ ତା' ନିଜ ବାଟରେ ଯିବାକୁ ଛାଡ଼ିଦିଅ । କିନ୍ତୁ ସାବଧାନ, କୃପାଣଜିତ୍‌କୁ ପ୍ରାଣ ନେଇ ଯିବାକୁ ଦିଅନାହିଁ । ଭାଲ ଚଳାଅ ।"

ନେତାର ନିର୍ଦ୍ଦେଶ ପାଇ ବାମନମାନେ ସାହସ ବାନ୍ଧି ସେ ଦୁହିଁଙ୍କୁ ଘେରିଗଲେ । ନରବାନର ଅକ୍ଳେଶରେ ସେମାନଙ୍କୁ ଜଣ ଜଣ ଧରି ଦୂରକୁ ଫୋପାଡ଼ି ଦେବାକୁ ଲାଗିଲା । କେହି କେହି ପଳାଇଲେ । କେହି କେହି ଭାଲ ଯୋଗେ ନରବାନରକୁ ଆକ୍ରମଣ କଲେ ।

କୃପାଣଜିତ୍ ଏଣେ ତେଣେ ଅନାଇ ହଠାତ୍ ଖଣ୍ଡିଏ ଶକ୍ତ ଡାଳ ପଡ଼ିଥିବାର ଦେଖି ତାକୁ ଉଠାଇ ଆଣିଲା ଓ ସେଥିରେ ବାମନମାନଙ୍କୁ ଆଖିବୁଜା ପ୍ରହାର ଦେବାକୁ ଲାଗିଲା । ବାମନମାନେ ବି ପ୍ରାଣର ମମତା ଛାଡ଼ି କୃପାଣଜିତ୍‌କୁ ସାମନା କରି ତା' ଉପରେ ଭାଲ ପ୍ରହାର କରିବାକୁ ଲାଗିଲେ । ବାନରମାନଙ୍କ ଚିତ୍କାରକୁ ବଳି ଶୁଭୁଥାଏ ନରବାନରର ହୁଙ୍କାର ।

ବାମନ ପଲ୍ଲୀ ପାଖରେ ଏ ଭଳି ଅଗ୍ନି କାଣ୍ଡ ଓ କୋଳାହଳ ଲାଗିଥିବାର ଦୂରରୁ ଦେଖି ପାରିଲେ ଦୁଇଜଣ ବିଚିତ୍ର ମଣିଷ । ସେମାନେ ଘୋଡ଼ା ଜାତୀୟ ଦୁଇ ଅଦ୍ଭୁତ ଜୀବ ଉପରେ ସବାର ହୋଇଥିଲେ । ସେ ଜୀବଙ୍କ ଦେହ ମତ୍ସ୍ୟ ଭଳି ଆବରଣରେ ଢଙ୍କା ହୋଇଥିଲା । ସେମାନଙ୍କ ଦେହ ମକରକେତୁର ବାହନ. ଜଳଗ୍ରହ ଭଳି ଦିଶୁଥିଲା । ସବାର ଦୁଇଜଣ ମଧ୍ୟ ମତ୍ସ୍ୟଚର୍ମ ଆବୃତ ବସ୍ତ୍ର ପିନ୍ଧିଥିଲେ । ସେମାନଙ୍କ ଅଣ୍ଟାରେ ଝୁଲୁଥିଲା ଲମ୍ବା ତରବାରି ।

(କ୍ରମଶଃ)





## ରାଜପୁତ୍ରଙ୍କ ପର୍ଯ୍ୟଟନ

ରାଜା ବିକ୍ରମାର୍କ ପୁଣି ସେ ବୃକ୍ଷ ନିକଟକୁ ଆସି ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣି କାନ୍ଧରେ ପକାଇ ଝଡ଼ ରାତି ତଥା ପ୍ରେତମାନଙ୍କ ଅଟ୍ଟହାସ୍ୟ ପ୍ରତି ଭ୍ରୂକ୍ଷେପ ନ କରି ଶୁନ୍‌ଶାନ୍ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରନ୍ତେ ଶବସ୍ଥିତ ବେତାଳ କହିଲା, "ରାଜନ୍ ! ତମ ପିତାହିଁ ତମକୁ ଏ କଠିନ କାମରେ ଲଗାଇ ନାହାନ୍ତି ତ ? ପୁତ୍ର ଉପରେ ହଠାତ୍ କୌଣସି କାର୍ଯ୍ୟଭାର ଦେଇ ତୃପ୍ତି ଲଭ କଲା ଭଳି ପିତାଙ୍କ ଦୃଷ୍ଟାନ୍ତ ରହିଛି । କଳିଙ୍ଗ-ରାଜ ଗୁଣଦେବଙ୍କ କଥା ଧର । ଶୁଣ, କହୁଛି ସେ କାହାଣୀ । ଶୁଣିଲେ ଶ୍ରମଭାର ଲାଘବ ମନେ ହେବ ।"

ବେତାଳ ଗପି ଚାଲିଲା : ଏକଦା କଳିଙ୍ଗ ଶାସନ କରୁଥିଲେ ରାଜା ଗୁଣ ଦେବ । ତାଙ୍କର ଏକମାତ୍ର ପୁତ୍ର ରାଜେନ୍ଦ୍ର ଯୌବନରେ ଉପନୀତ ହେବା ବେଳକୁ ଯୁଦ୍ଧବିଦ୍ୟା ଓ ରାଜନୀତି ତଥା ଶାସ୍ତ୍ରରେ ବେଶ୍ ଜ୍ଞାନ ଅର୍ଜନ କରି ଥିଲେ ।

କିନ୍ତୁ ରାଜା ଭାବିଲେ, ଦେଶ ଓ ଜନତା

---



ସମ୍ପର୍କରେ ବାସ୍ତବ ଜ୍ଞାନ ଲାଭ ପାଇଁ ରାଜପୁତ୍ର ପର୍ଯ୍ୟଟନରେ ବାହାରିବା ଉଚିତ ।

ପିତାଙ୍କ ନିର୍ଦ୍ଦେଶ ଅନୁସାରେ ରାଜେନ୍ଦ୍ର ପୂର୍ବ ଦିଗକୁ ଯାତ୍ରାରମ୍ଭ କଲେ । ତାଙ୍କ ପଛରେ ଛଦ୍ମ ବେଶରେ ଯାଉଥାନ୍ତି କେତେଜଣ ଅତ୍ୟନ୍ତ ଚତୁର ଓ ଦକ୍ଷ ଗୁପ୍ତଚର । ରାଜପୁତ୍ର କୌଣସି ବିପଦରେ ପଡ଼ିଲେ ତାଙ୍କୁ ରକ୍ଷା କରିବା ଥିଲା ସେମାନଙ୍କ ଦାୟିତ୍ୱ । କିନ୍ତୁ ସେମାନେ ଅନୁସରଣ କରୁଛନ୍ତି ବୋଲି ରାଜେନ୍ଦ୍ର ଜାଣି ନ ଥିଲେ ।

କିଛିଦିନ ଭ୍ରମଣ ପରେ ରାଜପୁତ୍ର ଗୋଟିଏ ଅରଣ୍ୟ ମଧ୍ୟରେ ପ୍ରବେଶ କଲେ । ଗୋଟିଏ ଗଛ ମୂଳରେ ସେ ବିଶ୍ରାମ କରୁଛନ୍ତି, ତାଙ୍କ କାନରେ କାହାରି ଅସ୍ପଷ୍ଟ କ୍ରନ୍ଦନ ଧ୍ୱନି ପଡ଼ିଲା । ସେ ଉଠିଯାଇ ଇତସ୍ତତଃ ଅନ୍ୱେଷଣ କରି କାହାକୁ ଦେଖିଲେ ନାହିଁ । କ୍ରନ୍ଦନ କିନ୍ତୁ ଅବାରିତ ଶୁଭୁଥାଏ । ଅବଶେଷରେ ସେ ଦେଖିଲେ ଏକ ସୁଡ଼ଙ୍ଗ ପଥ । ସେ ଧିରେ ଧିରେ ଓହ୍ଲାଇ ଯାଇ ଦେଖିଲେ ଭୂଗର୍ଭ ଗୃହ ମଧ୍ୟରେ ପାତାଳ ଭୈରବୀଙ୍କ ମୂର୍ତ୍ତି ବିଦ୍ୟମାନ । ମୂର୍ତ୍ତି ଆଗରେ ଗୋଟିଏ ସ୍ତମ୍ଭ ଦେହରେ ବନ୍ଧା ରହିଛନ୍ତି ଜଣେ ସୁନ୍ଦରୀ ଯୁବତୀ । ମଝିରେ ଜଳୁଛି ଦୀପଟିଏ ।

ରାଜେନ୍ଦ୍ର ପଚାରିଲେ, "କିଏ ତୁମେ ?" ଯୁବତୀ ଉତ୍ତର ଦେଲେ, "ମୁଁ ମାଳବର ରାଜ-କନ୍ୟା । ନାମ ମୋର ମଣିମାଳା । ଜଣେ ତାନ୍ତ୍ରିକର ଏକମାତ୍ର କନ୍ୟା ମରିଯାଇଛି । ତା'ର ବିଶ୍ୱାସ, ମୃତ କନ୍ୟାର ଜନ୍ମ ନକ୍ଷତ୍ର ଓ ଲଗ୍ନ ଅନୁସାରେ ଜନ୍ମିଥିବା କୌଣସି କନ୍ୟାକୁ ପାତାଳଭୈରବୀଙ୍କ ଆଗରେ ବଳି ଦେଲେ ତା' କନ୍ୟା ପୁଣି ବଞ୍ଚିବ । ମୁଁ ସେହି ଲଗ୍ନ ଓ ନକ୍ଷତ୍ରରେ ଜନ୍ମିଥିବାରୁ ମୋତେ ତାନ୍ତ୍ରିକ ହରଣଚାଳ କରିଆଣି ଏଠାରେ ରଖିଛି । ଆଜି ରାତିରେ ବଳି ଦେବ ।"

"ତୁମେ ଚିନ୍ତା କର ନାହିଁ । ମୁଁ ତୁମକୁ ରକ୍ଷା କରିବି ।" ଏହା କହି ରାଜେନ୍ଦ୍ର ଅନ୍ୟ ଗୋଟିଏ ସ୍ତମ୍ଭ ଆଡ଼ୁଆଳରେ ଲୁଚି ରହିଲେ ।

ରାତି ଘନ ହେବାରୁ ତାନ୍ତ୍ରିକ ସେଠାରେ ପହଞ୍ଚିଲା ଓ ମୂର୍ତ୍ତି ଆଗରେ ବସି ପଢ଼ି ମନ୍ତ୍ର ପାଠ ଆରମ୍ଭ କଲା । ହଠାତ୍ ରାଜେନ୍ଦ୍ର ଝପଟି ଆସି ନିଜ ତରବାରିରେ ତା' ମୁଣ୍ଡ କାଟି ପକାଇଲେ । ତା'ପରେ ସେ ମଣିମାଳାଙ୍କୁ ମୁକ୍ତ କରି ନିଜ

ଘୋଡ଼ାରେ ତାଙ୍କୁ ବସାଇ ନେଇଯାଇ ମାଳବ ରାଜ ପ୍ରାସାଦରେ ପହଞ୍ଚାଇ ଦେଲେ । ରାଜା ରାଣୀଙ୍କ ଖୁସି କହିଲେ ନ ସରେ । ବହୁ ଆଡ଼ମ୍ବର ସହକାରେ ରାଜା ମଣିମାଳା ସହ ରାଜେନ୍ଦ୍ରଙ୍କ ବିବାହ ଦେଲେ ।

ରାଜେନ୍ଦ୍ର ମଣିମାଳାଙ୍କୁ ଧରି କଳିଙ୍ଗ ପ୍ରତ୍ୟାବର୍ତ୍ତନ କଲେ । ରାଜା ଗୁଣଦେବ ଆନନ୍ଦରେ ମଣିମାଳାଙ୍କୁ ସ୍ୱାଗତ କଲେ ।



କିଛିଦିନ ଗଲା । ରାଜା ଦିନେ ରାଜେନ୍ଦ୍ରଙ୍କୁ ଡାକି କହିଲେ, "ତମେ ଯେଉଁ ପର୍ଯ୍ୟଟନ କଲ, ସେଥିରେ ମୋର ସନ୍ତୋଷ ହେଲା ନାହିଁ । ଆଉ ଥରେ ଯାଅ ।"

"ଯଥା ଆଜ୍ଞା" କହି ରାଜେନ୍ଦ୍ର ପୁନର୍ବାର ବାହାରି ଗଲେ । ଏଥର ସେ ଗଲେ ପଶ୍ଚିମ ଅଭିମୁଖେ । ଏଥର ବି ତାଙ୍କୁ ଅନୁସରଣ କଲେ ଗୁପ୍ତଚର ।

କିଛି ଦିନ ପରେ ସେ ଏପରି ଏକ ରାଜ୍ୟରେ ପହଞ୍ଚିଲେ, ଯେଉଁଠିକାର ବାସିନ୍ଦାମାନେ ଅତି ଦୁର୍ବଳ ଓ ଅସୁସ୍ଥ ଦିଶୁଥିଲେ । ସେମାନଙ୍କୁ ଦେଖି ରାଜେନ୍ଦ୍ର ବହୁତ ଦୁଃଖ ପାଇଲେ । ଅନୁସନ୍ଧାନ କରି ସେ ବୁଝିଲେ ଯେ ଦେଶରେ ଦୁର୍ଭିକ୍ଷ ପଡ଼ିଛି । ତଥାପି ସେ ଦେଶର ରାଜା ପ୍ରଜାଙ୍କ ଉପରୁ କର ଅସୁଲ କରିବାକୁ ଛାଡ଼ୁନାହାନ୍ତି । କେହି କର ଦେଇ ନ ପାରିଲେ ତାକୁ ନିର୍ଯ୍ୟାତନା ଭୋଗିବାକୁ ପଡ଼ୁଛି ।

ସେ ଯାଉଁ ଯାଉଁ ଦେଖିଲେ, ଗୋଟାଏ ଗାଁର ଅସହାୟ ଲୋକଙ୍କ ଉପରେ ରାଜାଙ୍କ ସିପାହିମାନେ ଜୁଲୁମ ଚଳାଇଛନ୍ତି । ସେ ଏସବୁ ସହି ନପାରି ସିଧା ସେ ରାଜ୍ୟର ରାଜା ଆଗରେ ଯାଇ ପହଞ୍ଚିଲେ ଓ ତାଙ୍କ ଶାସନର କଡ଼ା ସମାଲୋଚନା କଲେ ।

ସେ ମୂର୍ଖ ରାଜାର ଜ୍ଞାନୋଦୟ ହେବା ତ ଦୂରର କଥା, ସେ କ୍ରୁଦ୍ଧ ହୋଇ ରାଜେନ୍ଦ୍ରଙ୍କୁ ବନ୍ଦୀ କରି କାରାଗାରରେ ନିକ୍ଷେପ କଲା ।

ଗୁପ୍ତଚରମାନେ ଘୋଡ଼ା ଛୁଟାଇ ଆସି କଳିଙ୍ଗ ରାଜା ଗୁଣଦେବଙ୍କୁ ଏ ସମ୍ବାଦ ଦେଲେ । ଗୁଣଦେବଙ୍କ ବିଶାଳ ସୈନ୍ୟ ବାହିନୀ ଯାଇ ମାଳବ ରାଜାଙ୍କୁ ପରାସ୍ତ କଲେ ଓ କାରାଗାରରୁ ରାଜେନ୍ଦ୍ରଙ୍କୁ ମୁକ୍ତ କଲେ ।

ଗୁଣଦେବ ରାଜେନ୍ଦ୍ରଙ୍କୁ କୁଣ୍ଢାଇ ପକାଇ କହିଲେ, "ଏଥର ତମର ପର୍ଯ୍ୟଟନ ମୋତେ

ଯଥାର୍ଥ ସନ୍ତୋଷ ଦେଇଛି ।" ଏହା ପରେ ଯୁବରାଜ ରୂପେ ରାଜେନ୍ଦ୍ରଙ୍କ ଅଭିଷେକ ହେଲା ।

ବେତାଳ କାହାଣୀଟି ଶୁଣାଇ ସାରି କହିଲା, "ରାଜା ! ମୋର ଗୋଟାଏ ସନ୍ଦେହ ରହିଛି । କାହିଁକି ଗୁଣଦେବ ରାଜେନ୍ଦ୍ରଙ୍କ ପ୍ରଥମ ପର୍ଯ୍ୟାୟର ପର୍ଯ୍ୟଟନରେ ସନ୍ତୁଷ୍ଟ ହେଲେ ନାହିଁ ? ସେ ଯାତ୍ରା ରାଜେନ୍ଦ୍ରଙ୍କ ପକ୍ଷରେ ହୋଇଥିଲା ସୁଖପ୍ରଦ । ଅଧିକନ୍ତୁ, ସେ ସୁନ୍ଦରୀ ପତ୍ନୀଟି ମଧ୍ୟ ଲାଭ କରିଥିଲେ । ଅଥଚ ଦ୍ୱିତୀୟ ଯାତ୍ରାରେ ସେ ଦୁଃଖଦାୟକ ଅଭିଜ୍ଞତା ଅର୍ଜନ କରିବା ସତ୍ତ୍ୱେ ଗୁଣଦେବ କିପରି ସନ୍ତୋଷ ଅନୁଭବ କଲେ ? ରାଜା ! ତମେ ଏ ପ୍ରଶ୍ନର ଉତ୍ତର ଜାଣି କରି ମଧ୍ୟ ଯଦି ନିରୁତ୍ତର ରହିବ, ତେବେ ତମ ଶିର ସ୍କନ୍ଧଚ୍ୟୁତ ହେବ, ଜାଣିରଖ !"

ବିକ୍ରମାର୍କ ତତ୍କ୍ଷଣାତ୍ ଉତ୍ତର ଦେଲେ, "ସୁଖକର ଅଭିଜ୍ଞତା ଅର୍ଜନ କରିବା ନିମନ୍ତେ ରାଜା ଗୁଣଦେବ ପୁତ୍ରଙ୍କୁ ପର୍ଯ୍ୟଟନ ପାଇଁ ପଠାଇ ନ ଥିଲେ । ସେ ପ୍ରଥମ ଥର ସୁଖରେ ଓ ଯୋଗ୍ୟ ପତ୍ନୀଟିଏ ଧରି ଫେରିବାରୁ ରାଜା ଖୁସି ହୋଇଥିଲେ ନିଶ୍ଚୟ, କିନ୍ତୁ ସେ ଖୁହୁଁଥିଲେ ଜନତାର ଘନିଷ୍ଠ ସମ୍ପର୍କରେ ଆସି ରାଜେନ୍ଦ୍ର ସେମାନଙ୍କ ସମସ୍ୟା ଓ ଦୁଃଖ କଥା ଜାଣନ୍ତୁ । ଦ୍ୱିତୀୟ ଯାତ୍ରାରେ ରାଜେନ୍ଦ୍ର ସେହି ଜ୍ଞାନ ଲାଭ କଲେ । ଅନ୍ୟ ଜଣେ ରାଜା ଯେପରି ଅନ୍ୟାୟ କରୁଥିବାର ଓ ତା' ପ୍ରଜାବର୍ଗ ଯେପରି କଷ୍ଟ ପାଉଥିବାର ଦେଖି ସେ ଉତ୍ତେଜିତ ହେଲେ, ସେଥିରୁ ତାଙ୍କୁ ଯଥେଷ୍ଟ ଶିକ୍ଷା ମିଳିଥିବ । ନିଜେ ରାଜା ହେବା ପରେ ସେ ନିଶ୍ଚୟ ସେ ଶିକ୍ଷା ମନେ ରଖିବେ । ତାଙ୍କ ପ୍ରଥମ ଯାତ୍ରା ଥିଲା ତାଙ୍କ ନିଜ ପାଇଁ ମଙ୍ଗଳକର; ତାଙ୍କ ଦ୍ୱିତୀୟ ଯାତ୍ରା ହେଲା ତାଙ୍କ ନିଜ ପାଇଁ ତଥା ସମଗ୍ର ରାଜ୍ୟ ପାଇଁ ମଙ୍ଗଳକର । ତେଣୁ ରାଜା ଗୁଣଦେବ ପୁତ୍ରର ଦ୍ୱିତୀୟ ଯାତ୍ରାରୁ ଅଧିକ ସନ୍ତୋଷ ପାଇଥିଲେ ।"

ରାଜାଙ୍କ ମୌନଭଙ୍ଗ ହେବା ମାତ୍ରେ ଶବ ସହ ବେତାଳ ତାଙ୍କ କାନ୍ଧରୁ ଖସି ଯାଇ ପୁନର୍ବାର ସେ ଗଛ ଡାଳରେ ଝୁଲି ପଡ଼ିଲା ।

(କଳ୍ପିତ)





# ଭୂମିଦାନ

ଫୁଲପୁର ଗ୍ରାମ ସୀମାରେ ଖଣ୍ଡିଏ ପ୍ରଶସ୍ତ ଜମି ପଡ଼ିଆ ପଡ଼ିଥିଲା । ଲୋକେ କହୁଥା'ନ୍ତି, କୌଣସି ଅଭିଶାପ ହେତୁ ଜମି ଖଣ୍ଡିକର ସେଭଳି ଅବସ୍ଥା ହୋଇଛି । ଦିନ ଥିଲା, ଯେତେବେଳେ ସେ ଜମିରେ ବେଶ୍ ଫସଲ ଫଳୁଥିଲା । କିନ୍ତୁ ବର୍ଷେ ବନ୍ୟାରେ ଜମି ଖଣ୍ଡିକ ପ୍ଲାବିତ ହେବା ଉତ୍ତାରୁ ତେଣିକି ଆଉ ସେଥିରେ ଫସଲ ଉଧେଇଲା ନାହିଁ ।

ଗ୍ରାମର ଧନୀକ ପ୍ରସାଦ ଦାସର ଜମି ସିଏ । ପ୍ରସାଦର ସେ ଜମି ପ୍ରତି ଖାତିର ନ ଥାଏ ।

ଗ୍ରାମର ତରୁଣ ରତନ ସହରରୁ କୃଷି-ବିଜ୍ଞାନ ଅଧ୍ୟୟନ କରି ଗାଁକୁ ଫେରିଥାଏ । ଯେତେବେଳେ ସେ ପଡ଼ିଆ ଉପରେ ତା'ର ଆଖି ପଡ଼େ, ସେତେବେଳେ ମନ ତା'ର ଖରାପ ହୋଇଯାଏ । ସେ ଜମିରେ ଫସଲ ନ ହେଲା ନାହିଁ, ଅନ୍ତତଃ ଲୋକେ ଘରଦ୍ୱାର ବନାଇଲେ ବି ଜମି କାମରେ ଲାଗନ୍ତା । କିନ୍ତୁ ସମସ୍ତଙ୍କର ଘର ଦ୍ୱାର ଅଛି । ଅଭିଶପ୍ତ ଜମି ଉପରକୁ କିଏ ବା କାହିଁକି ଉଠିଯିବ ? ତହିଁରେ ଫସଲ ଉପୁଜାଇ ପାରିଲେ ଯାଇ କିଛି କାମ ହେବ ।

ରତନ ସେ ଜମିରୁ କିଛି ମାଟି ସଂଗ୍ରହ କରି ସହରର କୃଷି ଗବେଷଣାଗାରକୁ ନେଇ ଗଲା । ସେଠାକାର ବିଶେଷଜ୍ଞ ତାକୁ ପରୀକ୍ଷା କରି ଦେଖିଲେ, ଏକ ନିର୍ଦ୍ଦିଷ୍ଟ ରାସାୟନିକ ସାର ସେଥିରେ ମିଶାଇ ଦେଲେ ସେ ଜମିରେ ଉତ୍କୃଷ୍ଟ ଫସଲ ଉଧେଇବ ।

ରତନ ଭାବିଲା, ସେ ଜମି ଯଦି କୌଣସି ପ୍ରକାରେ ଗ୍ରାମର ଜମିହୀନ ଦୁଇ ଗରିବ ପରିବାରଙ୍କ ହାତକୁ ଆସନ୍ତା, ତେବେ ସେ ନିଜେ ଲାଗିପଡ଼ି ସେଥିରେ ସାର ମିଶାଇ ତାକୁ ଚାଷଯୋଗ୍ୟ କରି ଦିଅନ୍ତା । ପ୍ରସାଦର ମାଲିକାନାରେ ଥିବା ଯାଏ ସେପରି ପରିଶ୍ରମ କରିବାକୁ ତାକୁ ବା କୁଆଡ଼ୁ ଉତ୍ସାହ ମିଳିବ !

କିନ୍ତୁ ପ୍ରସାଦ ଭଲ ଲୋକ ଯେ ସେ ଜମି

ଗ୍ରାମର ଜମିହୀନମାନଙ୍କୁ ବାଣ୍ଟିଦେବ, ସେ ଆଶା ନ ଥିଲା । କୌଣସି ଉପାୟରେ ତା' ମନରେ ଭୟ ଜନ୍ମାଇ ସେ କାମ କରାଇ ନେବାକୁ ହେବ ।

ସହରରେ ଥିଲା ରତନର ଜଣେ ବନ୍ଧୁ । ସେ ଯାଦୁକର । ରତନ ତା' ସହ ପରାମର୍ଶ କରି ଖୁସି ମନରେ ଗାଁକୁ ଆସିଲା ।

ତା'ପରେ ଦିନେ ସକାଳେ ସେ ଯାଇ ପ୍ରସାଦ ଘରେ ପହଞ୍ଚିଲା ଓ ପଚାରିଲା, "ଆପଣଙ୍କ ଖବର କ'ଣ ? ଭଲ ଅଛନ୍ତି ତ ?"

"ହଁ ଭାଇ, ମୁଁ ବେଶ୍ ଅଛି । କିନ୍ତୁ ସକାଳଟାରେ ତମେ ଭୁଚ୍ଛା ମୋ ଭଲ ମନ୍ଦ ବୁଝିବାକୁ ଆସିଲ, ସେ କଥା ନୁହେଁ । ଉଦ୍ଦେଶ୍ୟ କ'ଣ ?"

"କହୁଛି । ଆପଣ ବିଶ୍ୱାସ କଲେ ହେଲା । ସ୍ୱପ୍ନରେ ଦେବୀ ମୋତେ ଦର୍ଶନ ଦେଇ କହିଲେ, ତୋ ଗାଁରେ ଖଣ୍ଡିଏ ବିରାଟ ଜମି ପଡ଼ିଆ ପଡ଼ିଛି । ଅଥଚ ଦୁଇ ଗୁରି ପରିବାରଙ୍କର ମୋଟେ ଜମି ନାହିଁ । ପ୍ରସାଦକୁ କହ, ସେ ପଡ଼ିଆ ଜମିତକ ସେ ଗରିବ ଲୋକଙ୍କୁ ବାଣ୍ଟିଦେଉ । ଦେବୀ ମୋତେ ଗୋଟାଏ ମନ୍ତ୍ର ବି ଶିଖାଇ ଦେଇଛନ୍ତି । କହିଛନ୍ତି କି ଗରିବମାନେ ଜମି ପାଇବା ଉପରୁ ଜମି ଉପରେ ସେ ମନ୍ତ୍ର ପଢ଼ି ମୁଁ ଥରେ ବୁଲି ଆସିଲେ ଜମିରେ ଭଲ ଫସଲ ହେବ । ଦେବୀ ଆହୁରି ବି କହିଛନ୍ତି, ଆପଣ ଏଥିରେ ସମ୍ମତ ନ ହେଲେ ଆପଣଙ୍କର ବଡ଼ ଅମଙ୍ଗଳ ହେବ । ଆପଣଙ୍କର ଭଲ ଜମିମାନ ପଡ଼ିଆ ହୋଇଯିବ ।



ଗୋରୁ ମଇଁଷିମାନେ ମରିଯିବେ । ସିନ୍ଧୁକରେ ଥିବା ଟଙ୍କା କଉଡ଼ିତକ ପାଉଁଶ ହୋଇଯିବ ।"

ପ୍ରସାଦ ଗମ୍ଭୀର ହୋଇ କହିଲା, "ଦେବୀ ତମକୁ ଯେ ମନ୍ତ୍ର ଶିଖାଇଛନ୍ତି, ତମେ ମୋ ଆଗରେ ତା'ର କିଛି ପ୍ରମାଣ ଦେଇ ପାରିବ ?'

"ନିଶ୍ଚୟ ପାରିବି । କିନ୍ତୁ ପ୍ରମାଣ ଦେବା ପରେ ଆପଣ ଦେବୀଙ୍କ ନିର୍ଦ୍ଦେଶ ଅନୁସାରେ ଜମିତକ ଗରିବଙ୍କୁ ଦେଇ ଦେବେ ତ ?" ରତନ ପଚାରିଲା ।

"କାହିଁକି ନ ଦେବି ! ଜମିତ ଖାଲି ପଡ଼ିଛି । ଯଦି ତାକୁ ବିତରଣ କରି ଦେଲେ ଦେବୀ ଖୁସି ହେବେ, ତେବେ ତ ଅତି ଭଲ କଥା । କିନ୍ତୁ ମୋର ବିଶ୍ୱାସ ହେବା ଦରକାର ।" ପ୍ରସାଦ କହିଲେ ।

ସେତେବେଳେ ରତନ ବିଦାୟ ନେଇ ଚାଲିଗଲା । ସନ୍ଧ୍ୟାବେଳକୁ ସେ ଗ୍ରାମର ଜମିହୀନ କେତେ ଜଣଙ୍କୁ ସାଥିରେ ଧରି ପୁଣି ପ୍ରସାଦ ଘରକୁ ଆସିଲା । ନିଜ ପକେଟରୁ ଗୋଟିଏ କାଚ ଗିଲାସ ବାହାର କରି ଟେବୁଲ ଉପରେ ରଖି ସେ କହିଲା, "କେହି ଜଣେ ଯାଇ ସେ ପଡ଼ିଆ ଭୂଇଁରୁ କିଛି ମାଟି ନେଇ ଆସୁ ।"

ପ୍ରସାଦର ପୁଅହିଁ ଦୌଡ଼ିଯାଇ ମାଟି ନେଇ ଆସିଲା । ରତନ ସେ ମାଟିତକ ଗିଲାସରେ ପୂରାଇଲା ଓ ଗିଲାସ ଉପରେ ରୁମାଲଟିଏ ଢାଙ୍କି ଦେଲା । ତା'ପରେ ସେ ତଳେ କିଛି ସମୟ



ଆଖି ବୁଜ ବସି ଉଠି ଆସି ଗିଲାସ ଉପରେ ଫୁଙ୍କ ଦେଇ ରୁମାଲ କାଢ଼ି ନେଲା । ଦେଖିବା ବେଳକୁ ଗିଲାସ ଭିତରର ମାଟିତକ ଧାନରେ ପରିଣତ ହୋଇଛି !

"ଜୟ, ଦେବୀଙ୍କର ଜୟ !" ସମସ୍ତେ କହି ଉଠିଲେ ।

ପ୍ରସାଦ ଉଠି ଆସି ରତନକୁ କୁଣ୍ଢାଇ ପକାଇ କହିଲା, "ସେ ଜମିତକ ଏଇ ମୁହୂର୍ତ୍ତରୁ ତମର । ତମେ ଯାହା ଖୁସି କର । ମୁଁ ବର୍ତ୍ତମାନ କାଗଜରେ ଲେଖି ଦେଉଛି ।"

ବାସ୍ ! ଜମିହୀନମାନେ ସେ ଜମିତକ ଭାଗ କରି ନେଲେ । ରତନ ସହରରୁ ରାସାୟନିକ ସାର ଆଣିଲା । ସମବାୟ ବିଭାଗରୁ କିଛି ଋଣ ମଧ୍ୟ ମିଳିଲା । ଜମିରେ ସାର ଭଲ ଭାବରେ ମିଶାଇ ରତନର ତତ୍ତ୍ୱାବଧାନରେ ସେଥିରେ ବିହନ ବୁଣାଗଲା । ଯଥା ସମୟରେ ସେଥିରେ ଦେଖା ଦେଲା ସୁନ୍ଦର ଫସଲ । ନିଜ ଦାନ ସାର୍ଥକ ହୋଇଛି ଜାଣି ପ୍ରସାଦ ମଧ୍ୟ ବହୁତ ଖୁସି ହେଲା ।

କିନ୍ତୁ ମାଟି ଧାନରେ ପରିଣତ ହୋଇଥିଲା କିପରି ? କଥା ହେଲା, ରତନ ଯେଉଁ କାଚ ଗିଲାସଟି ଆଣିଥିଲା, ତାହା ସାଧାରଣ ଗିଲାସ ନୁହେଁ । ଗିଲାସଟିର ମଧ୍ୟ ଭାଗରେ ଦୁଇପ୍ରସ୍ଥ କୁନି ଦର୍ପଣ ଲଗାଇ ଗିଲାସକୁ ଦୁଇଭାଗ କରା-ଯାଇଥିଲା । ଦର୍ପଣ ଦୁଇ ପ୍ରସ୍ଥର ପାରଦ ଲଗି-ଥିବା ଦିଗ ପରସ୍ପର ଯୋଡ଼ ହୋଇ ହୋଇଥିଲା ଓ ସାଦା କାଚ ଅଂଶ ବାହାରକୁ ଥିଲା । ଯେଉଁ ପାଖକୁ ଦେଖିଲେ ଅଧା ଗିଲାସ କାଚରେ ପ୍ରତିଫଳିତ ହୋଇ ପୁରା ଗିଲାସର ଧାରଣା ଦେଉଥିଲା । ଗିଲାସର ଅର୍ଦ୍ଧ ଭାଗରେ ରତନ ପୂର୍ବରୁ ଧାନ ଭର୍ତ୍ତି କରି ରଖିଥିଲା । କିନ୍ତୁ ସେ ଅଂଶ କାନ୍ଥ ଆଡ଼କୁ ଥାଏ । ଖାଲି ଅଂଶ ଲୋକଙ୍କ ଆଡ଼କୁ ଥାଏ । ସେଇ ଭାଗରେ ମାଟି ଭର୍ତ୍ତି କରି ରୁମାଲ ଉଠାଇବା ବେଳେ ରତନ କୌଶଳ କ୍ରମେ ଗିଲାସର ଧାନ ଭର୍ତ୍ତି ଦିଗଟି ଲୋକଙ୍କ ଆଡ଼କୁ ବୁଲାଇ ଦେଇଥିଲା । ତେଣୁ ମାଟି ଧାନରେ ପରିଣତ ହୋଇଛି ବୋଲି ମନେ ହେଲା । ଏଇ ହେଲା ରହସ୍ୟ ।



# ଜ୍ଞାନୋଦୟ

ବଜ୍ରଗିରିର ରାଜା ବଜ୍ରପାଳ ଥରେ ଚିନ୍ତା କରି ଠିକ୍ କଲେ ଯେ ତାଙ୍କ ଦେଶରେ କେହି ଦୁଷ୍ଟ, ଅତ୍ୟାଚାରୀ, ଠକ ଇତ୍ୟାଦି ରହିବେ ନାହିଁ । ତେଣୁ ଯେତେବେଳେ ଏପରି ଲୋକ ଧରାପଡ଼ନ୍ତି ରାଜା ସେମାନଙ୍କୁ ରାଜ୍ୟରୁ ବାହାର କରି ଦିଅନ୍ତି । ଏପରି ଭାବରେ ରାଜ୍ୟର ବହୁ ଲୋକଙ୍କ ପରିବାରରୁ ଜଣେ ଦୁଇଜଣ କରି ନିର୍ବାସିତ ହେଲେ । ଲୋକଙ୍କ ଭିତରେ ଭାଳେଣି ପଡ଼ିଗଲା । ରାଜାଙ୍କର ଏହି ନିୟମ କିପରି ବଦଳାଇବେ ସେ ବିଷୟରେ ଆଲୋଚନା କରିବାକୁ କେତେକ ମୁଖିଆ ଲୋକ ଗୁପ୍ତରେ ଏକତ୍ରିତ ହେଲେ ଓ ଯୋଜନା ମଧ୍ୟ ପ୍ରସ୍ତୁତ କଲେ । ସେହି ଯୋଜନା ଅନୁସାରେ ସୀମାକ୍ଷେତ୍ର ନାମକ ଏକ ଜଙ୍ଗଲି ଗ୍ରାମ ପାଖକୁ ବରାବର ଅଭିଯୋଗ ଆସିଲା ଯେ ବାଘ ଇତ୍ୟାଦି ଭୟଙ୍କର ଜନ୍ତୁ ସବୁ ଆସି ଗ୍ରାମରେ ପଶି ଉପଦ୍ରବ କରୁଛନ୍ତି । ରାଜାଙ୍କ ପାଖକୁ ଖବର ଗଲା ଯେ ସେମାନେ ମଣିଷ ଖାଇ ଯାଉଛନ୍ତି ।

ରାଜା ମନ୍ତ୍ରୀଙ୍କୁ ପଚାରିଲେ, "ଏପରି ତ କେବେ ହୋଇ ନ ଥିଲା । ଏହା କିପରି କଥା ?"

"ଜଙ୍ଗଲି ନେତା ଜଙ୍ଗଲ ଭିତରୁ ମଣିଷଖିଆ ଜନ୍ତୁମାନଙ୍କୁ ତଡ଼ି ଦେଉଛି ।" ମନ୍ତ୍ରୀ କହିଲେ ।

"ଏପରି ଜନ୍ତୁମାନଙ୍କୁ ଦଣ୍ଡ ଦେବାକୁ ହେବ ଓ ନିଜର ନିୟନ୍ତ୍ରଣରେ ରଖିବାକୁ ହେବ । କିନ୍ତୁ ଅନ୍ୟ ଗ୍ରାମ ଆଡ଼କୁ ତଡ଼ି ଦେବା କି ପ୍ରକାର କଥା ? ସେଥିରେ ଅନ୍ୟର କ୍ଷତି ହେବ !" ରାଜା କହିଲେ ।

"ମହାରାଜ, ଆମେ ତ ଆମ ଦେଶର ଦୁଷ୍ଟମାନଙ୍କୁ ଠିକ୍ ସେହିପରି ଅନ୍ୟ ଦେଶକୁ ତଡ଼ି ଦେଉଛେ ।" ମନ୍ତ୍ରୀ ଉତ୍ତର ଦେଲେ । ରାଜାଙ୍କର ଜ୍ଞାନୋଦୟ ହେଲା ଓ ସେ ନିଜର ନିୟମକୁ ବଦଳାଇ ଦେଲେ !





# ମନ୍ଦଭାଗ୍ୟ

ଦିନେ ସକାଳେ ରାଜାରାମ ନିଦରୁ ଉଠି ତା' କୋଠରୀରୁ ବାହାରି ଆସି ଦେଖେ ତ ତା' ସ୍ତ୍ରୀ ସ୍ନାନ କରି ବଗିଚାରୁ ଫୁଲ ତୋଳି ସାରି ଫେରୁଛି ।

"ଆଜି ପ୍ରଥମେ ତୁମ ମୁହଁ ଚାହିଁଲି । ଦିନଟା କିପରି ଯାଉଛି ଦେଖାଯାଉ ।" ରାଜାରାମ କହିଲା ।

ସ୍ତ୍ରୀ ହସି କହିଲା, "ଦିନ ନିଶ୍ଚୟ ଭଲରେ ଯିବ । ମୋ ବାପାଙ୍କର ନିଦ ଭାଙ୍ଗିଲେ ସେ ପ୍ରଥମେ ମୋତେ ଡାକି ପକାଉଥା'ନ୍ତି । ମୁଁ ଆସି ତାଙ୍କ ବିଛଣା ପାଖରେ ଠିଆ ହେଲେ ଯାଇ ସେ ଆଖି ଖୋଲୁଥା'ନ୍ତି । ପ୍ରଥମେ ମୋ ମୁହଁ ଦେଖିଲେ ଶୁଭ ହେବ ବୋଲି ତାଙ୍କ ବିଶ୍ୱାସ ଥିଲା ।"

ରାଜାରାମ ଅଳ୍ପଦିନ ହେଲା ବିବାହ କରିଥିଲା । ସ୍ତ୍ରୀ କଥା କେତେ ଦୂର ସତ୍ୟ, ତାହା ଦେଖିବା ସକାଶେ ସେ ମନେ ମନେ କୌତୁହଳୀ ହୋଇ ରହିଲା ।

ରାଜାରାମ ଜଣେ ବ୍ୟବସାୟୀ ଦୋକାନରେ କାମ କରୁଥାଏ । ସେ ଦିନ ଖିଆପିଆ କରି ଦୋକାନକୁ ଗଲାବେଳେ ସେ ବାଟକୁ ଚାହିଁ ଚାହିଁ ଚାଲୁଥାଏ—କାଳେ କିଛି ଟଙ୍କାପଇସା ପଡ଼ିଥିବ । କିନ୍ତୁ ସେପରି କିଛି ଦେଖାଗଲା ନାହିଁ ।

ଦୋକାନରେ ପହଞ୍ଚି ଭାବିଲା, ଆଜି ହୁଏତ ତା' ଯୋଗୁ କିଛି ଭଲ ବ୍ୟବସାୟ ହେବ ଏବଂ ଫଳରେ ମାଲିକ ଖୁସି ହୋଇ ତାକୁ ପୁରସ୍କାର ଦେବେ । କିନ୍ତୁ ସେପରି କିଛି ହେବା ତ ଦୂରର କଥା, ମାଲିକ ବରଂ ସେଦିନ ଖରାପ ମିଜାଜ୍‌ରେ ଥିବାର ଦେଖାଗଲା ଓ କଥାରେ କଥାରେ ସେ କର୍ମଚାରୀମାନଙ୍କୁ ଗାଳିଗୁଲଜ କଲେ ।

ରାଜାରାମ ହଠାତ୍ ଦେଖିଲା, ତା' ଶ୍ୱଶୁର ଘରର ଚାକର ଆସିଛି । ଦୀପାବଳି ପାଖେଇ ଆସୁଥାଏ । ପୂର୍ବବର୍ଷ ଶ୍ୱଶୁର ଝିଅଜୁଆଁଇଙ୍କୁ ଘରକୁ ନିମନ୍ତ୍ରଣ କରି ନେଇ ଥିଲେ । ଏ ବର୍ଷ ବି ହୁଏତ ନିମନ୍ତ୍ରଣ ଧରି ନଚେତ୍ କିଛି ଉପହାର

ଅଶୋକ

ଧର ଗୃହକର୍ତ୍ତି ଆସିଛୁ ବୋଲି ଗଜାରାମ ଭାବିଲା ।

କିନ୍ତୁ ଗୃହକର୍ତ୍ତା ତାକୁ ନମସ୍କାର କରି କହିଲା, "ଆପଣଙ୍କ ଶାଶୁ ଶ୍ୱଶୁର ତୀର୍ଥଯାତ୍ରା ଯିବେ । ଆପଣଙ୍କ ପାଖରୁ ଦୁଇ ତିନିଶହ ଯାହା ମିଳିବ ଟଙ୍କା ଧାର ନେଇଯିବା ପାଇଁ ମୋତେ ପଠାଇଛନ୍ତି ।"

"ମୋଠି ଟଙ୍କା କାହିଁ ?" ଗଜାରାମ ବିରକ୍ତ ହୋଇ ଗୃହକର୍ତ୍ତାକୁ ବିଦାୟ କରି ଦେଲା ।

ଅନ୍ଧାର ହୋଇ ଆସିଲାଣି । ଗଜାରାମ ବଜାର ଭିତର ଦେଇ ଗଲା ବେଳେ ହଠାତ୍ ଜଣେ ବୁଢ଼ୀ ଆସି ତା' ଆଗରେ ଠିଆ ହୋଇ ପଚାରିଲା, "ଆରେ, ତୁ ତ ମୋର ଗଜାରାମ ?"



ଗଜାରାମ ଚମକି ପଡ଼ିଲା । ଏତେ ବର୍ଷ ପରେ ବୁଢ଼ୀ ତାକୁ ଏତେ ସହଜରେ ଚିହ୍ନି ଦେଲା କିପରି ? ଗଜାରାମ ଯେତେବେଳେ ପିଲା, ତା' ବାପା ମାଆ ମରିଗଲେ । ଆପଣାର ବୋଲି ତା'ର କେହି ନ ଥିଲେ । ସେତେବେଳେ ଦୂର ଗାଁର ଏ ବୁଢ଼ୀ ହିଁ ତାକୁ ବାଟରୁ ଡାକି ନେଇଯାଇ ଘରେଠାଇଁ ଦେଇଥିଲା । ବୁଢ଼ୀର ଗୋଟାଏ ବୋଲି ପୁଅ ମରିଯାଇ ଥାଏ । ଗଜାରାମ ଚେହେରା ସହ ସେ ପୁଅର ସାମଞ୍ଜସ୍ୟ ଥିବା ହେତୁ ବୁଢ଼ୀ ଗଜାରାମ ଉପରେ ସ୍ନେହ ଶ୍ରଦ୍ଧା ଢାଳି ଦେଉଥାଏ । ବୁଢ଼ୀର ଅଳ୍ପ ଜମିଥିଲା ଓ କେତୋଟି ଗାଈ ଥିଲେ । ଘିଅ ତିଆରି କରି ବିକି ଯାହା ପାଉଥିଲା, ସେଥିରେ ଗଜାରାମକୁ ଚଳାଉଥିଲା ଓ ଗାଁ ପାଠ ଶାଳାରେ ପାଠ ବି ପଢ଼ାଉ ଥିଲା ।

ଚାରି ବର୍ଷ ପରେ ଦିନେ ବୁଢ଼ୀ ବେମାର ପଡ଼ିଲା । ସେ ଗଜାରାମକୁ ପାଖକୁ ଡାକି କହିଲା, "ମୁଁ ଯଦି ଦୈବାତ୍ ଅଚଳ ହୋଇଯିବି, ତେବେ ତୁ ମୋର ଦେଖାଶୁଣା କରିବୁ ତ ? ଭଗବାନ ମୋ ସହାୟତା କରିବା ପାଇଁ ତୋତେ ପଠାଇଛନ୍ତି ।"

ଗଜାରାମର ମନେ ହେଲା ବୁଢ଼ୀ ସତରେ ବେମାର ପଡ଼ିବ ଓ ତାକୁ କଷ୍ଟ କରି ତା'ର ସେବା କରିବାକୁ ହେବ । ସ୍ୱାର୍ଥପର ଭଳି ସେ

ବୁଢ଼ୀକୁ କିଛି ନ କହି ରାତିରେ ତା' ଘର ଛାଡ଼ି ପଳାଇ ଗଲା । ନିଜ ଗାଁକୁ ଆସି ବ୍ୟବସାୟୀ ପାଖରେ ଚାକିରି ନେଲା ଓ ଦୁଇ ପଇସା ଜମେଇ ରଖି ଘର ଖଣ୍ଡିଏ ତୋଳିବା ପରେ ବାହା ହେଲା ।

ଏତେ ବର୍ଷ ପରେ ବୁଢ଼ୀକୁ ଦେଖି ସେ ଆତଙ୍କିତ ହେଲା । ବୁଢ଼ୀ ନିଶ୍ଚୟ ଶେଷ ବୟସରେ ତାହାର ଆଶ୍ରୟ ଲୋଡ଼ି ଆସି ପହଞ୍ଚିଛି !

"ରାଜାରାମ ! ତୁ ମୋତେ ଚିହ୍ନିପାରୁ ନାହୁଁ ନା କ'ଣ ?" ବୁଢ଼ୀ ତାକୁ କହିଲା ।

ରାଜାରାମର ମନ ତ ବିଗିଡ଼ି ରହିଥିଲା । ସେ କହିଲା, "ଚିହ୍ନି କ'ଣ କରିବି ? ମୋ ନିଜ ପରିବାର ପୋଷଣ ମୋ ପକ୍ଷରେ କାଠିକର । ତୋତେ ମୁଁ କି ସାହାଯ୍ୟ ଦେଇ ପାରିବି ?" ଏହା କହି ସେ ଚାଲିଗଲା । ପଛରୁ ବୁଢ଼ୀର ଦୀର୍ଘ ନିଃଶ୍ୱାସ ଶୁଣି ପାରିଲା ।

ଘରେ ପହଞ୍ଚି ସେ ସ୍ତ୍ରୀକୁ କହିଲା, "ସମଗ୍ର ଦିନ ବିତିଗଲା । ଡମ ମୁହଁ ଚାହିଁ ଲାଭ ହେବା ତ ଦୂରର କଥା, ବରଂ ଗୋଟାଏ ବୋଝରୁ ଅଳ୍ପକେ ବଞ୍ଚିଗଲି । ମୁଁ ଯେଉଁ ବୁଢ଼ୀ ଘରେ କିଛି ଦିନ ଆଶ୍ରୟ ନେଇଥିଲି, ସେ ଆସି ପହଞ୍ଚି ଥିଲା ଯେ ମୁଁ କୌଣସି ତାକୁ ଭଗେଇ ଦେଇ ଚାଲି ଆସିଲି ।"

"ତୁମେ କଲ କ'ଣ ?" ସ୍ତ୍ରୀ ଚିତ୍କାର କରି ପଚାରିଲା ?

"କାହିଁକି ? କ'ଣ ?"

ସ୍ତ୍ରୀ କହିଲା, "ବୁଢ଼ୀ ପ୍ରଥମେ ଆମ ଘରର ସନ୍ଧାନ ପାଇ ମୋତେ ଆସି ଭେଟିଲେ । ମୋତେ ଗୋପନରେ କହିଲେ କି ହଠାତ୍ ତାଙ୍କ ବାଡ଼ି ପଛପଟରୁ ସେ ଦଶ ହଜାର ଟଙ୍କା ଓ ଟେକାଏ ସୁନା ପୋତାଧନ ପାଇଛନ୍ତି । ତୁମକୁ ସେ ପୁଅ ଭଳି ଦେଖନ୍ତି ବୋଲି ସେସବୁ ସେ ତମକୁ ଦେବାର ସିଦ୍ଧାନ୍ତ କରିଥିଲେ । ତୁମକୁ ଦେଖିବା ପାଇଁ ବ୍ୟାକୁଳ ହୋଇ ସେ ବଜାର ଭିତରକୁ ବାହାରି ଯାଇଥିଲେ !"

ରାଜାରାମ ମୁଣ୍ଡରେ ହାତ ଦେଇ ବସି ପଡ଼ିଲା ।





# ମାଲିସର କରାମତି

ପ୍ରଚଣ୍ଡ ଦେଶର ରାଜା ପ୍ରଭଞ୍ଜନଙ୍କର ସେନାପତି ହଠାତ୍ ଦିନେ ମରିଗଲେ । ସେହି ପଦ ପାଇଁ ଅନେକ ପ୍ରାର୍ଥୀ ଥିଲେ । ରାଜା ଠିକ୍ କରି ପାରିଲେ ନାହିଁ କାହାକୁ ସେନାପତି ପଦ ଦେବେ ।

ରାଜାଙ୍କ ନାପିତ ସବୁଦିନେ ରାଜାଙ୍କୁ ତେଲ ମାଲିସ୍ କରିବାକୁ ଆସେ । ବହୁତ ସମୟ ଧରି ମାଲିସ୍ କରେ । ତେଣୁ ରାଜା ତାଙ୍କ ସମସ୍ୟାସବୁ ତାକୁ କୁହନ୍ତି ।

ଦିନେ ରାଜା ତାଙ୍କ ନୂତନ ସମସ୍ୟାଟି ତାକୁ ଶୁଣାଇଲେ । ନାପିତ କହିଲା, "ମହାରାଜ, କେବଳ ଶକ୍ତିଶାଳୀ ଲୋକହିଁ ସେନାପତି ପାଇଁ ଯୋଗ୍ୟ ନୁହେଁ । ତା' ଭିତରେ ଖୁବ୍ ରାଜଭକ୍ତି ଥିବା ଦରକାର ।"

"କିନ୍ତୁ ମୁଁ କିପରି ଜାଣିପାରିବି କାହାର ରାଜଭକ୍ତି ଅଛି ?" ରାଜା ପଚାରିଲେ ।

ନାପିତଟି ରାଜାଙ୍କୁ ଗୋଟିଏ ଉପାୟ ବତାଇଲା । ତା'ପରେ ରାଜା ସେନାପତି ପଦ ପାଇଁ ପ୍ରାର୍ଥୀ ଗୁରିଜଣଙ୍କୁ ଡକାଇ ପଠାଇଲେ ଓ କହିଲେ, "ମୁଁ ତୁମମାନଙ୍କର ପରୀକ୍ଷା ନେବାକୁ ଚାହୁଁଥିଲି । କିନ୍ତୁ ମୋର ଶରୀର ମାଲିସ୍ କଲାବାଲାକୁ ବିଛା କାମୁଡ଼ିଥିବାରୁ ସେ ଆଜି ନାହିଁ । ତେଣୁ କାଲି ଯାହା କରା ହେବ ।"

ଏକଥା ଶୁଣି ଗୁରିଜଣଯାକ ଫେରିଗଲେ, କିନ୍ତୁ ଜଣେ କିଛି ସମୟ ପରେ ଲେଉଟି ଆସି କହିଲା, "ନାପିତ ନ ଆସିଲେ ମଧ୍ୟ ଆପଣ କାହିଁକି କଷ୍ଟ ସହିବେ ? ଆପଣଙ୍କର ସେବା କରିବା ତ ଆମର ଧର୍ମ ।" ଏକଥା କହି ସେ ମାଲିସ୍ କରିବା ଆରମ୍ଭ କରି ଦେଲା । ଶେଷରେ ସେଇହିଁ ସେନାପତି ପଦ ପାଇଲା । ତା' ନାମ ଥିଲା ଶୂରବର୍ମା ।

କିଛି ଦିନ ପରେ ମନ୍ତ୍ରୀପଦ ମଧ୍ୟ ଖାଲି ହେଲା । ସୁବିଧା ଦେଖି ଶୂରବର୍ମା ତା'ର ବନ୍ଧୁ ମହାମତିକୁ ମନ୍ତ୍ରୀପଦ ପାଇବାର ଉପାୟ ବତାଇ ଦେଲା ।

ମହାମନ୍ତ୍ରୀ ପରଦିନ ସକାଳେ ପହଞ୍ଚି ରାଜାଙ୍କୁ ମାଲିସ୍ କଲା ଓ ମନ୍ତ୍ରୀପଦ ପାଇଗଲା ।

ସେହି ଦିନଠାରୁ ଯେଉଁ ପଦ ଖାଲି ହେଉଥିଲା କାହିଁକି, ରାଜା ସେହି ପଦଟି ତାଙ୍କୁ ସବୁଠୁ ଭଲ ମାଲିସ୍ କରିବା ଲୋକଙ୍କୁ ଦେଉଥିଲେ । ଥରେ ପୁରୋହିତ ପଦ ଖାଲି ହୋଇଗଲା । ସେଥି ପାଇଁ ପୁରୋହିତଙ୍କ ପୁଅ ବ୍ୟତୀତ ଆଉ କେହି ପ୍ରାର୍ଥୀ ନ ଥିଲେ । ତେଣୁ ଏ କ୍ଷେତ୍ରରେ ରାଜାଙ୍କୁ ମାଲିସ୍ ନ କରିଥିବା ଲୋକ ମଧ୍ୟ ପଦଟି ପାଇଯାଉଛି । ଏକଥା ଭାବି ରାଜା ଦୁଃଖିତ ହେଲେ । ସେଥି-ପାଇଁ ରାଜା ଏକ ନିୟମ ରଖିଲେ ଯେ ତାଙ୍କ ରାଜ୍ୟର କର୍ମଚାରୀମାନେ କାର୍ଯ୍ୟ ଆରମ୍ଭ କରିବାର ପ୍ରଥମ ଦିନ ରାଜାଙ୍କୁ ତେଲ ମାଲିସ୍ କରିବେ ।

ଥରେ ରାଜାଙ୍କର କିଛି ଚର୍ମରୋଗ ଦେଖା ଦେଲା । ରାଜବୈଦ୍ୟମାନେ ରାଜାଙ୍କୁ କହିଲେ, "ମହାରାଜ, ଆପଣଙ୍କୁ ମାଲିସ୍ କରିବା କୌଣସି ଲୋକର ନିଶ୍ଚୟ ଏହି ରୋଗ ଥିଲା । ତା'ଠାରୁ ଏହା ଡେଇଁଛି । ଆମେ ଏଥିପାଇଁ ଔଷଧ ଦେଉଛୁ । କିନ୍ତୁ ଭବିଷ୍ୟତରେ ଆପଣ ଯାହା ତାହାଦ୍ୱାରା ଆଉ ମାଲିସ୍ କରାଇବେ ନାହିଁ ।"

ବୈଦ୍ୟମାନେ ଔଷଧ ଦେଲେ ଓ ମାଲିସ୍‌ର ନିୟମ ମଧ୍ୟ ବନ୍ଦ ହୋଇଗଲା । ରାଜା ଏ ଖବର ନାପିତକୁ ଶୁଣାଇଲେ ।

ନାପିତ ହସି କରି କହିଲା, "ମହାରାଜ, ରାଜଭକ୍ତିର ପରୀକ୍ଷା ପାଇଁ ମାଲିସ୍ ଏକମାତ୍ର ଉପାୟ ନୁହେଁ । ଅକାରଣରେ ଆପଣ କାହା ଉପରେ ରାଗିଗଲେ ଯଦି ସେ ତାହା ସହି ଯାଇ ପୁଣି ଆପଣଙ୍କ ପାଖରେ କ୍ଷମା ପ୍ରାର୍ଥନା କରେ, ତେବେ ତା'ର ମଧ୍ୟ ରାଜଭକ୍ତି ଅଛି ବୋଲି ଜଣାଯିବ ।"

ତା'ପରେ ରାଜା ଏହି ନୂଆ ସୂତ୍ରକୁ ଆଧାର କରି ବିଭିନ୍ନ ପଦ ପାଇଁ ପ୍ରାର୍ଥୀ ବାଛିଲେ । ହେଲେ ମାଲିସ୍ କରିବା ନିୟମ ଏପରି ଏକ ପ୍ରଥା ହୋଇ ରହିଗଲା ଯେ କୌଣସି ଅଯୋଗ୍ୟ ବ୍ୟକ୍ତି ଯଦି କୌଣସି ଚାକିରି ପାଏ, ତେବେ ଲୋକେ ଏବେ ମଧ୍ୟ କହିବାର ଶୁଣାଯାଏ, "ସିଏ ବୋଧେ କେଉଁଠି ତେଲ ମାଲିସ୍ କରିଛି ।"



# ଗଧର ବୋଝ

ଗୋଟିଏ ଗ୍ରାମରେ ରାଘବ ନାମରେ ଜଣେ ରଜକ ଥିଲା । ତା'ର ଗୁଡ଼ିଏ ଛୁଆ ଥା'ନ୍ତି । ପରିବାର ଭରଣ ପୋଷଣ କରି ନପାରି ଦିନେ ସେ ରାଘବ ଉଠି ଘରୁ ପଳାଇଗଲା । ତା'ର ବଡ଼ ପୁଅଟି ଛଅ ବର୍ଷର ହୋଇଥାଏ । ବାପା ଚାଲିଯିବାରୁ ସେ କଷ୍ଟେ ମଷ୍ଟେ ପରିବାର ଚଳାଇଲା ।

ପାଞ୍ଚବର୍ଷ ପରେ ରାଘବ ଘରକୁ ଫେରିଲା । ନିଜେ ଯେଉଁ କାମ କରିପାରୁ ନଥିଲା ପୁଅ ସେ କାମ କରୁଛି ଦେଖି ଖୁସି ହେଲା । ପୁଅ ମଧ୍ୟ ଖୁସି ହେଲା ଯେ ବାପ ବର୍ତ୍ତମାନ କିଛିଟା ଅନ୍ତତଃ ସାହାଯ୍ୟ କରିବ ।

କିନ୍ତୁ ରାଘବ କୌଣସି ପ୍ରକାରେ ପୁଅକୁ ସାହାଯ୍ୟ କଲା ନାହିଁ, ଓଲଟା ଖାଇପିଇ ଆରାମ କଲା । କିଛି ଦିନ ପରେ ପୁଅ ବାପକୁ କିଛି ଶିକ୍ଷା ଦେବାକୁ ଚାହିଲା । ଦିନେ ରାଘବ ଦେଖିଥାଏ, ତା' ପୁଅ ଗଧ ଉପରେ ବିରାଟ ବୋଝ ଲଦିଲା ଓ ଟଳମଟଳ ଅବସ୍ଥାରେ ନିଜେ ମଧ୍ୟ ବୋଝ ଉପରେ ବସିପଡ଼ିଲା । ଗଧ ସମ୍ଭାଳି ନ ପାରି ଆଣ୍ଠେଇ ପଡ଼ିଗଲା ।

ଏହା ଦେଖି ରାଘବ ଚିତ୍କାର କରି କହିଲା, "ଆରେ ଦୁଷ୍ଟ, ତୁ ଗଧକୁ ମାରି ଦେଲୁ ! ତା' ଉପରେ ଭାରି ବୋଝ ଲଦିଲୁ; ପୁଣି ନିଜେ ବସିପଡ଼ିଲୁ ?"

"ମୁଁ ମଧ୍ୟ ଠିକ୍ ସେହି କଥା ତୁମକୁ ପଚାରୁଛି । ପରିବାରର ଯେଉଁ ବୋଝ ମୁଁ ଉଠାଉଛି ସେଥିରେ ମୁଁ ଦବି ଯାଉଛି । ତା' ଉପରେ ତମେ ଆସି ମୋ ଉପରେ ବସିପଡ଼ିଲ କିପରି ?" ପୁଅ ଜବାବ୍ ଦେଲା । ଏଥର ରାଘବ ନିଜର ଭୁଲ ବୁଝିପାରିଲା ।





# ସ୍ୱର୍ଗକୁ ରାସ୍ତା !

ଅନେକ ଦିନ ତଳର କଥା । ରାମପୁର ଗାଁରେ ଥିଲା ହରିଦାସ । ସେ ଥିଲା ଏକୁଟିଆ ଲୋକ । ଦିନବେଳେ କାହାରି ଘରେ ହେଲେ କାମ ଦାମ କରି ଖାଇପିଇଦିଏ ଓ ରାତିରେ ଯାତ୍ରା, ପାଲା ଦେଖେ ବା କେଉଁଠି ପୁରାଣପାଠ ହେଉଥିଲେ ଯାଇ ଶୁଣେ ।

ମୃତ୍ୟୁ ପରେ ଯିଏ ସ୍ୱର୍ଗକୁ ଯାଏ, ସିଏ କେଡ଼େ ସୁଖରେ ରହେ, ଦିନେ କୌଣସି ଗାୟକଙ୍କ ପାଖରେ ବସି ସେ ସେହି ବର୍ଣ୍ଣନା ଶୁଣିଲା । ସ୍ୱର୍ଗରେ ଅପ୍‌ସରାମାନେ ନାଚୁଥାନ୍ତି । ଖାଇବା ପିଇବାର ଅଭାବ ନ ଥାଏ । ଏସବୁ ଶୁଣି ତା'ର ମନେ ହେଲା ସେ ନିଜେ ମରିଯାଇ ସ୍ୱର୍ଗକୁ ଗଲେ କେଡ଼େ ଭଲ ନ ହୁଅନ୍ତା !

ପରଦିନ ଗାୟକଙ୍କର ମହାଶୟ ବିଶ୍ରାମ କରୁଥିବା ବେଳେ ସେ ଯାଇ ତାଙ୍କୁ ପଚାରିଲା, "ଆଜ୍ଞା ! ସ୍ୱର୍ଗକୁ ଯିବାର ମାର୍ଗ କ'ଣ ?"

"ପୁଣ୍ୟ ସଞ୍ଚୟ । ତୁମେ ଏଇ ପୃଥିବୀରେ ଯେତିକି ସୁଖ ପାଉଛ, ସେତିକିରେ ସନ୍ତୁଷ୍ଟ ରହିବା ଭଲ ।" ଗାୟକ ଉତ୍ତର ଦେଲେ ।

କିନ୍ତୁ ହରିଦାସ ସେ ଉତ୍ତରରେ ତୃପ୍ତି ପାଇଲା ନାହିଁ । ସେ କହିଲା, "ଆଜ୍ଞା ! ସଂସାରର ସୁଖ ସାମାନ୍ୟ । ସେଥିପ୍ରତି ମୋର ଆକର୍ଷଣ ନାହିଁ । ମୋର ଲୋଡ଼ା ସ୍ୱର୍ଗସୁଖ । ଯେତେ ଶୀଘ୍ର ସେଠାରେ ପହଞ୍ଚିବି ସେତେ ଭଲ ।"

ଗାୟକ ହାଲୁକା ଭାବରେ କହିଦେଲେ, "ତାହାହେଲେ ଗୋଟାଏ କାମ କର । ବୈକୁଣ୍ଠ ଏକାଦଶୀ ଦିନ ଯାଇ ଗଙ୍ଗାରେ ଡୁବ ମାରି ପ୍ରାଣ ବିସର୍ଜନ ଦିଅ । ସିଧା ସ୍ୱର୍ଗରେ ପହଞ୍ଚିବ ।"

ହରିଦାସ ବୈକୁଣ୍ଠ ଏକାଦଶୀ ପୂର୍ବଦିନ ଯାଇ ଗଙ୍ଗାକୂଳରେ ପହଞ୍ଚିଲା । ପ୍ରଭାତରେ ଗଙ୍ଗାଙ୍କୁ ଧ୍ୟାନ କରି ନଦୀ ଭିତରକୁ ଡେଇଁପଡ଼ିଲା ।

କିନ୍ତୁ ହଠାତ୍ ସେ ଦେଖିଲା, ସେ ଯାଇ ନରକରେ ପହଞ୍ଚିଛି । ଆଗରେ ଯମରାଜା ଓ ଚିତ୍ରଗୁପ୍ତ ବସିଛନ୍ତି ।

"କିପରି କଥା ? ମୁଁ ଏଠାକୁ କିପରି ଆସିଲି ? ବୈକୁଣ୍ଠ ଏକାଦଶୀରେ ପ୍ରାଣ ଦେଲେ ପରା ସ୍ୱର୍ଗକୁ ଯାଆନ୍ତି ?" ହରିଦାସ ମନକୁ ମନ କହିଲା ।

"ତୁମ ଆୟୁ ଶେଷ ହେବା ଆଗରୁ ତୁମେ ନିଜ ପ୍ରତି ହିଂସାଚରଣ କରି ମରିଛ । ଏହା ମହା ପାପ । ତେଣୁ ନର୍କକୁ ଆସିଲ । ତେବେ ପବିତ୍ର ଦିନରେ ଆସିଛ ବୋଲି ତୁମକୁ କ୍ଷମା କରାଗଲା । ଫେରିଯାଇ ନିଷ୍ଠାପର ଜୀବନ ଯାପନ କଲେ ଯଥା ସମୟରେ ସ୍ୱର୍ଗକୁ ଯିବ ।"

ପର ମୁହୂର୍ତ୍ତରେ ହରିଦାସର ଜ୍ଞାନ ଫେରି ଆସିଲା । ଦେଖିଲା, ସେ ଗଙ୍ଗା ଉପରେ ପହଁରୁଛି । ସେ କୂଳକୁ ଆସିଲା ଓ ଝାଡ଼ଝୁଡ଼ ହୋଇ ବିଶ୍ରାମ କରି ପୁଣି ଘରକୁ ଫେରିଗଲା । କିଛିଦିନ ପରେ ସେ ଜଣକ ଦୋକାନରେ ଚାକିରି କଲା । ଅତି ଶୀଘ୍ର ଦୋକାନୀ ତାକୁ ଏତେ ଭଲ ପାଇବାକୁ ଲାଗିଲା ଯେ କିଛିଦିନ ଉତ୍ତାରୁ ସେ ତାକୁ ନିଜ ଝିଅ ସହ ବିବାହ ଦେଲା । ଦୋକାନୀ ଶେଷ ବୟସ ଯାଇ ତୀର୍ଥରେ କଟାଇଲା । ଦୋକାନର ମାଲିକ ହେଲା ହରିଦାସ ।

କେତେବର୍ଷ ବିତିଗଲା । ହରିଦାସର ପିଲାପିଲି ହେଲେ ଓ ସଂସାର ବେଶ୍ ସୁରୁଖୁରୁରେ ଚଲୁଥାଏ । ଦିନେ ସେ ଭାବିଲା, "ସଂସାରରେ ଯେତିକି ସୁଖ ପାଇବା କଥା ତାହା ପାଇଲି । ପରିବାର ପ୍ରତି ମୋର କର୍ତ୍ତବ୍ୟ ମଧ୍ୟ ଯଥାରୀତି ତୁଲାଇଛି । ଏଥର ସ୍ୱର୍ଗସୁଖ ଛଡ଼ା ମୋତେ ଆଉ କିଛି ସନ୍ତୋଷ ଦେଇପାରିବ ନାହିଁ ।

ହଠାତ୍ କାହାକୁ କିଛି ନ କହି ସେ ଘର ଛାଡ଼ି ଚାଲିଗଲା ଓ ବୈକୁଣ୍ଠ ଏକାଦଶୀ ଦିନ ଗଙ୍ଗାକୁ କୁଦିପଡ଼ିଲା ।

ଏଥର ମଧ୍ୟ ସେ ଯାଇ ନର୍କରେ ପହଞ୍ଚିଲା ।



ଯମରାଜା ବିରକ୍ତ ହୋଇ ତାକୁ ପଚାରିଲେ, "ନିଜ କର୍ତ୍ତବ୍ୟ ପୂରା କରିବା ପୂର୍ବରୁ ପୁଣି କାହିଁକି ଆସିଗଲ ?"

"ଆଜ୍ଞା ! ମୋ କର୍ତ୍ତବ୍ୟରେ ମୁଁ ଟିକେ ମଧ୍ୟ ହେଳା କରିନାହିଁ । ମୋ ପରିବାର ଚଳିବା ପାଇଁ ସବୁ ବ୍ୟବସ୍ଥା କରିଦେଇଛି । ଏଥର ସ୍ୱର୍ଗର ବାଟ ଦେଖାନ୍ତୁ ।" ହରିଦାସ କହିଲା ।

"ମୂର୍ଖ ! ତୁମ କର୍ତ୍ତବ୍ୟ କର୍ମ କ'ଣ, ସେଇଟା କ'ଣ ସାମାନ୍ୟ ବୁଦ୍ଧି ଦେଇ ତୁମେ ନିଜେ ନିରୂପଣ କରିପାରିବ ? ଯାଅ । ଯେତେବେଳେ ତୁମ କର୍ତ୍ତବ୍ୟ ପୂରା ହେବ, ସେତେବେଳେ ସ୍ୱାଭାବିକ ଭାବରେ ମୃତ୍ୟୁ ହେବ ।" ଯମରାଜା କହିଲେ ।

ହରିଦାସ ପୁଣି ଆସି କୂଳରେ ଲାଗିଲା । ଘରକୁ ଯାଇ ପୁଅଝିଅଙ୍କ ବିବାହର ଆୟୋଜନ କଲା । କ୍ରମେ ତା'ର ନାତି ନାତୁଣୀ ହେଲେ । ସେ ଏଥର ସେମାନଙ୍କ ମୋହରେ ସର୍ବଦା ମଜ୍ଜି ରହିଲା । ଆଉ ସ୍ୱର୍ଗ କଥା ଭାବିଲା ନାହିଁ । ସେମାନଙ୍କ ଭବିଷ୍ୟତ ପାଇଁ କଳ କୌଶଳ କରି ଗୁଡ଼ାଏ ସମ୍ପତ୍ତି ଆର୍ଜିଲା ।

ଦିନେ ସେ ବସି ନାତି ନାତୁଣୀ ସହ ଖେଳୁଥିଲା, ହଠାତ୍ ଦୁଇଜଣ ଯମଦୂତ ଆସି ତାକୁ ଧରି ନେଇ ଚାଲିଗଲେ । କିଛି ବୁଝି ପାରିବା ପୂର୍ବରୁ ସେ ଦେଖିଲା, ତା' ଦେହ ଟଳି ପଡ଼ୁଛି । ସେ ଯାଇ ଯମ ରାଜାଙ୍କ ଦରବାରରେ ହାଜର ।

"ଆଜ୍ଞା ! ମୋ ପ୍ରତି ଅନ୍ୟାୟ ହେଲା । ମୋତେ ଏତେ ଶୀଘ୍ର ପୃଥିବୀରୁ ଆଣିଲେ କିଆଁ ?" ସେ ଯମ ରାଜାଙ୍କୁ ପଚାରିଲା ।

ଯମରାଜା ହସି କହିଲେ, "ତୁମର ପରା କେବେଠୁ ସଂସାର ପ୍ରତି ବୈରାଗ୍ୟ ଆସିଥିଲା ?"

ହରିଦାସ ଚୁପ୍ କରି ଛିଡ଼ା ହେଲା ଓ କହିଲା, "ମୋର ଭୁଲ୍ ହୋଇଥିଲା । ଏଣିକି ମୋର ସଂସାର ପ୍ରତି କୌଣସି ବିରକ୍ତି ନାହିଁ ।"

ଯମରାଜା ଖାଲି ହସିଲେ । ହରିଦାସ ବୁଝିଲା ଯେ ଆଉ ତା' ପକ୍ଷରେ ଫେରି ଯିବା ସମ୍ଭବ ନୁହେଁ । ସେ ଗଭୀର ଯନ୍ତ୍ରଣା ଅନୁଭବ କଲା ଓ ଭାବିଲା, "ହାୟ, ମୁଁ ଯଦି ମାୟାରେ ନ ପଡ଼ି ସଂସାରରେ ଖାଲି ନିଷ୍ଠାପର ଜୀବନ ଯାପନ କରିଥା'ନ୍ତି !"






# ହିତ ଅହିତ

ରଙ୍ଗପୁରରେ ବାସୁଦେବ ନାମକ ଜଣେ ଧନୀ ଲୋକ ଥାଏ । ସେ ସମୁଦ୍ରରେ ବାଣିଜ୍ୟ କରି ବହୁତ ଉପାର୍ଜନ କଲା ଓ ନିଜ ଗାଁରେ ବହୁତ ବାଗବଗିଚା ଓ ଜମିବାଡ଼ି କିଣିଲା ।

ସେହି ଗାଁରେ ଶଙ୍କର ନାମରେ ଜଣେ ଲୋକ ଥିଲା । ସେ ମଧ୍ୟ ବାସୁଦେବ ପରି ବାଣିଜ୍ୟ ଓ ବ୍ୟବସାୟ କରିଥିଲା, କିନ୍ତୁ ସବୁଥିରେ କ୍ଷତି ସହିଲା । ତେଣୁ ବାସୁଦେବର ଉନ୍ନତିରେ ସେ ଈର୍ଷାରେ ଜଳିଯାଏ ।

ସବୁଦିନେ ସନ୍ଧ୍ୟାରେ ଗାଁ ଚୌପାଢ଼ୀରେ ସଭା ହୁଏ । ଥରେ ବାସୁଦେବ ପ୍ରସ୍ତାବ କଲା, "ଆମର ଜମିଦାର ଆମଠୁଁ କର ଆଦାୟ କରୁଛନ୍ତି ସିନା, ଆମର କଷ୍ଟ ଦେଖୁ ନାହାନ୍ତି । ପ୍ରତିବର୍ଷ ବନ୍ୟାରେ ଅନେକ ଫସଲ ନଷ୍ଟ ହେଉଛି । ନଈରେ ଯଦି ପଥର ବନ୍ଧ ହୁଅନ୍ତା ତେବେ ଅନେକ ଜମି ବନ୍ୟା ଦାଉରୁ ରକ୍ଷା ପା'ନ୍ତେ । ସେଥିପାଇଁ ମୁଁ ଅଧେ ଟଙ୍କା ଦେଉଛି; ଆଉ ଅଧେ ଆପଣମାନେ ମିଳିମିଶି ଦିଅନ୍ତୁ ।" ସମସ୍ତେ ଏକଥା ଶୁଣି ଖୁସି ହେଲେ ଓ ଟଙ୍କା ଦେବା ପାଇଁ ରାଜି ହେଲେ ।

ଶଙ୍କର ଏକଥା ଶୁଣି ଗ୍ରାମବାସୀଙ୍କୁ ଫୁସୁଲେଇଲା କି ବାସୁଦେବ ନିଜ ଜମି ଭଲ କରିବା ପାଇଁ ଟଙ୍କା ଉଠାଉଛି । ବନ୍ୟା କ'ଣ କେବେ ବନ୍ଦ ହେବ ? ଏସବୁ ଶୁଣି ଲୋକେ ଆଉ ବାସୁଦେବକୁ ଟଙ୍କା ଦେଲେ ନାହିଁ ବା କୌଣସି ପ୍ରକାରେ ସହଯୋଗ କଲେ ନାହିଁ ।

କିଛି ଦିନ ପରେ ପୁଣି ବାସୁଦେବ ଏକ ପ୍ରସ୍ତାବ ଦେଲା । ସେ କହିଲା "ଦେଖନ୍ତୁ, ଗ୍ରାମ ପାଖରେ ଯେଉଁ ନଦୀଟି ଅଛି, ତା'ଉପରେ ଗୋଟିଏ ପୋଲଟିଏ କଲେ ଆମରଯିବା ଆସିବାକୁ

ବହୁତ ସୁବିଧା ହେବ । ମୁଁ ଭନଚତୁର୍ଥାଂଶ-ଟଙ୍କା ଦେବି, ଆପଣମାନେ ବଳକା ଟଙ୍କା ଯୋଗାଡ଼ କରନ୍ତୁ ।" ସମସ୍ତେ ଖୁସି ହୋଇ ହଁ ଭରିଲେ । ଏକଥା ଶୁଣି ଶଙ୍କର ପୁଣି ସେମାନଙ୍କୁ କୁଶିକ୍ଷା ଦେଲା ଯେ ପୋଲ ହେଲେ ତ ସବୁ ଗାଁର ଲୋକ ଯିବେ ଆସିବେ । ଆମର ଅଧିକା କ'ଣ ଲାଭ ହେବ ? ଆମେ କାହିଁକି ପଇସା ଦେବା ! ବାସ୍, ସେଇଠୁ ପ୍ରସ୍ତାବଟିର ଇତି ହେଲା ।

ପୁଣି କିଛିଦିନ ପରେ ବାସୁଦେବ କହିଲା, "ଗାଁ ବାହାରେ ମୋର ଗୋଟିଏ ଜଙ୍ଗଲ ଅଛି । ଯଦି କିଏ ତାକୁ ଜଳାଇ କୋଇଲା ତିଆରି କରେ, ତେବେ ମୋର କିଛି ଆପତ୍ତି ନାହିଁ !" ଲୋକମାନେ ମାଗଣା କୋଇଲା ପାଇବା ପାଇଁ ଖୁସି ହୋଇ ଚାଲିଲେ ଓ ବଣରେ ନିଆଁ ଧରାଇଲେ । ପବନରେ ନିଆଁ ଉଡ଼ି ଆସି ଗ୍ରାମର କେତେକ ଘର ପୋଡ଼ିଲା । ଶଙ୍କର ସୁଯୋଗ ପାଇ ଗ୍ରାମବାସୀଙ୍କୁ ରଗେଇଲା । ସେମାନେ ଯାଇ ବାସୁଦେବ ପାଖରେ ଆପତ୍ତି କଲେ ଓ କ୍ଷତିପୂରଣ ଦାବି କଲେ ।

ବାସୁଦେବ ସମସ୍ତଙ୍କୁ ଗାଳି ଦେଇ କହିଲା, "ମୁଁ ଯେତେବେଳେ ଭଲ କାମ କରିବାକୁ କହୁଥିଲି, ସେତେବେଳେ ସେସବୁ ତୁମ ମନ ଭିତରେ ପଶୁ ନ ଥିଲା । ତମେ କୌଣସି ଦୁଷ୍ଟ ଲୋକ କଥାରେ ପଡ଼ି ସବୁ ବନ୍ଦ କଲ । କିନ୍ତୁ ଏଥର ମୁଁ ନିହାତି ବାଜେ ପ୍ରସ୍ତାବଟିଏ ଦେଲି; ଅଥଚ ତମେ କାହାକୁ ନ ପଚାରି ତ ବେଶ୍ କାମକୁ ଡେଇଁ ପଡ଼ିଲ ! ବାସ୍, ବର୍ତ୍ତମାନ ଫଳ ଭୋଗ କର ।"

ଏକଥା ଶୁଣି ଗାଁ ବାଲାମାନେ ଲଜ୍ଜାରେ ମୁଣ୍ଡ ତଳକୁ କରି ସେଠାରୁ ଚାଲିଗଲେ । ବାସୁଦେବଙ୍କ ଜଙ୍ଗଲ ବିନା ପଇସାରେ ସଫା ହୋଇଗଲା । ସେ ସେଠାରେ ଗୋଟିଏ ନଡ଼ିଆ ବଗିଚା କଲେ ।



# ଦୁଇ ବୁଦ୍ଧିମାନ୍ !

ଗୋଟିଏ ଗାଁରେ ଶରତ ନାମରେ କଂଜୁସ୍ ଲୋକ ଥିଲା । ତା' ପୁଅ ଗଣେଶ ସହରରେ ପଢୁଥାଏ ।

ଥରେ ତା' ମା'ର ଜନ୍ମ ଦିନରେ ସେ ଦୁଇଶହ ଟଙ୍କାର ଏକ ରେଶମ ଶାଢ଼ୀ ବାପାଙ୍କ ପାଖକୁ ପଠାଇଲା ଓ ଲେଖିଲା ତା' ଦାମ୍ ଶହେ ଟଙ୍କା । କାରଣ ସେ ଭାବିଲା ପ୍ରକୃତ ଦାମ୍ କହିଲେ ବାପା ରାଗିବେ ।

କିଛିଦିନ ପରେ ଗଣେଶ ତା' ବାପାଙ୍କ ଠାରୁ ଚିଠି ପାଇଲା । ସେଥିରେ ଲେଖା ଥିଲା—"ତୁ ଯେଉଁ ଶାଢ଼ୀ ପଠାଇଥିଲୁ ମୁଁ ତାକୁ ଦେଢ଼ଶ ଟଙ୍କାରେ ବିକି ପଚାଶ ଟଙ୍କା ଲାଭ କରିଛି । ଏଇ ଦାମ୍‌ରେ ଏଇ ପ୍ରକାରର ଆଉ ଡଜନେ ଶାଢ଼ୀ ପଠାଇବୁ ।"

ଚିଠିଟି ପଢ଼ି ବିଚରା ଗଣେଶ କାନମୁଣ୍ଡ ଆଉଁସି ରହିଲା ।





# ମାନବତା

ଶହେ ବର୍ଷ ତଳର କଥା । ସେତେବେଳେ ଗ୍ରାମମାନଙ୍କରେ ପଞ୍ଚାୟତ ସବୁ ପ୍ରକାର ଭଲ ମନ୍ଦ ବୁଝି ନ୍ୟାୟବିଚାର କରିବାରେ ପ୍ରସିଦ୍ଧ ଥିଲା ।

ବଲ୍ଲଭପୁର ଗ୍ରାମରେ ରାମାନୁଜ ନାମରେ ଜଣେ ଚାଷୀ ଥିଲା । ଦିନେ ସେ ଓ ତା' ବାପା ବଗିଚାରେ କାମ କରୁଥିବା ସମୟରେ ଛେଳ-ଟିଏ କୁଆଡ଼ୁ ପଶିଆସି ଫସଲ ଖାଇଗଲା । ବୁଢ଼ା ରାଗିଯାଇ ଏପରି ଜୋର୍‌ରେ ଢେଲାଟିଏ ଫୋପାଡ଼ିଲା ଯେ ତାହା ଛେଳର ମୁଣ୍ଡରେ ବାଜି ତତ୍‌କ୍ଷଣାତ୍ ଛେଳଟି ମରିଗଲା ।

ଠିକ୍ ପରେ ପରେ ବଗିଚାର ଅନ୍ୟ ପଟରୁ ଗୋଟିଏ ପଥର ଆସି ରାମାନୁଜର ବାପା ମୁଣ୍ଡରେ ବାଜିଲା । ସେଇ ଆଘାତରେହିଁ ବୁଢ଼ା ସେଇଠି ଟଳି ପଡ଼ିଲା । ରାମାନୁଜ ବଗିଚାରୁ ବାହାରକୁ ଦୌଡ଼ି ଆସି ଦେଖିଲା ଯେ ଜଣେ ଲୋକ ପଲେ ଛେଳ ଓ ମେଣ୍ଢା ଧରି ସେମାନଙ୍କୁ ଅଡ଼େଇ ଅଡ଼େଇ ଚାଲିଯାଉଛି । ସେ ଯାଇ ତାକୁ ଧରି ପଞ୍ଚାୟତ ହାତରେ ଦେଲା ଓ ଫେରାଦ ହେଲା ଯେ ସେ ତା'ର ବାପାକୁ ମାରି ଦେଇଛି ।

ପଞ୍ଚାୟତର ସଭ୍ୟମାନେ ବିଚାର ପାଇଁ ବସି-ଗଲେ ଓ ମେଣ୍ଢାବାଲାକୁ କହିଲେ, "କୁହ, ତୁମେ ରାମାନୁଜ ଅଭିଯୋଗର କ'ଣ ଉତ୍ତର ଦେବ ?"

ମେଣ୍ଢାବାଲା କହିଲା, "ମୋ ନାମ ଗୋପାଳ । ଏଠୁ ଛଅକୋଶ ଦୂରରେ ମୋର ଗାଁ । ବର୍ଷା ନ ହେବାରୁ ଘାସର ଅଭାବ ହେଲା । ତେଣୁ ମୁଁ ମେଣ୍ଢାଛେଳସବୁ ଚରାଉ ଚରାଉ ଏଠାକୁ ଚାଲି ଆସିଛି । ମୋ ଛେଳପଲରୁ ଗୋଟିଏ ଛେଳ ବାହାରିଯାଇ ତାଙ୍କ ବଗିଚାରେ ପଶି ଖାଇବାରୁ ବୁଢ଼ା ତାକୁ ପଥର ଫୋପାଡ଼ି ମାରି ଦେଲା । ମୁଁ ମଧ୍ୟ ରାଗରେ ଅନ୍ଧ ହୋଇ ବୁଢ଼ାକୁ ପଥର ଫିଙ୍ଗିଲ । ଆଘାତ ଲାଗି ବୁଢ଼ା ମରିଯାଇଛି । ପ୍ରକୃତରେ ଯାହା ଘଟିଛି ମୁଁ କହିଲ, ଆପଣ-ମାନେ ସେଥିପାଇଁ ମୋତେ ଯାହା ଦଣ୍ଡ ଦେବେ

ତାହା ମୁଁ ଗ୍ରହଣ କରିବାକୁ ସମ୍ପୂର୍ଣ୍ଣ ରାଜି ।"

ତାର ସରଳ କଥାରେ ସମସ୍ତେ ଖୁସି ହେଲେ ସତ, କିନ୍ତୁ ନିୟମ ଅନୁସାରେ ତାକୁ ମୃତ୍ୟୁଦଣ୍ଡ ମିଳିଲା । ଅବଶ୍ୟ ନିୟମରେ ଆଉ ଏକ ସର୍ତ୍ତ ଅଛି ଯେ ଯଦି ରାମାନୁଜ ତାକୁ କ୍ଷମା କରିଦିଏ ତେବେ ସେ ଦଣ୍ଡରୁ ନିଷ୍କୃତି ପାଇବ । କିନ୍ତୁ ରାମାନୁଜ ତାକୁ କ୍ଷମା ଦେବାକୁ ମନା କରିବାରୁ ମୃତ୍ୟୁଦଣ୍ଡହିଁ ତା' ପାଇଁ ଶେଷରେ ସ୍ଥିର ରହିଲା ।

ଗୋପାଳ ପଞ୍ଚାୟତଙ୍କୁ କହିଲା, "ମୁଁ କରିଥିବା କର୍ମର ଫଳ ଭୋଗିବି । ମୋ ଭାଗ୍ୟରେ ତ ଅଛି । କିନ୍ତୁ ଆପଣମାନଙ୍କ ପାଖରେ ମୋର ଗୋଟିଏ ନିବେଦନ ଅଛି । କଥା ହେଉଛି, ମୋର ପାଞ୍ଚବର୍ଷର ଗୋଟିଏ ଛୋଟ ଭାଇ ଅଛି । ମୋ ବାପା ମରିବାବେଳକୁ ତାଙ୍କ ସମ୍ପତ୍ତି ଦୁଇ ଭାଗ କରି ବାଣ୍ଟିଦେଇ ମୋତେ ଛୋଟ ଭାଇର ପାଳନ ପାଇଁ ଅଧିକ କିଛି ଧନ ଦେଇଛନ୍ତି । ତା'ର ଓ ମୋର ସବୁ ଧନ ଏକାଠି କରି ମୁଁ ଏକ ଗୁପ୍ତ ସ୍ଥାନରେ ରଖିଛି । ଏ କଥା ମୋ ବ୍ୟତୀତ ଅନ୍ୟ କେହି ଜାଣେ ନାହିଁ । ମୁଁ ଏଠି ମରିଗଲେ ଧନ ତ ମାଟିରେ ମିଶିବ; ମୋ ଛୋଟଭାଇଟି ମଧ୍ୟ ଅନାଥ ହୋଇଯିବ । ତେଣୁ ଆପଣମାନେ ମୋତେ ତିନିଦିନ ସମୟ ଦେଲେ ମୁଁ ଧନ ସହିତ ଭାଇଟିକୁ କୌଣସି ବିଶ୍ୱାସୀ ଲୋକ ହାତରେ ସମର୍ପିଦେଇ ଚାଲିଆସିବି ।"

ପଞ୍ଚାୟତ ସଭ୍ୟମାନେ କହିଲେ, "କିନ୍ତୁ ତୁମେ ଏପରି କରିବାକୁ ଚାହୁଁଛ ତ ତୁମ ସ୍ଥାନରେ କେହି ଜାମିନ ହେଲେ ଯାଇ ତୁମେ ଯିବ ।"

ସେଠାରେ ଗୋପାଳର ଜଣାଶୁଣା କେହି ଲୋକ ନ ଥିଲେ । କିନ୍ତୁ ସେହି ସଭାରେ ବସିଥିବା ଲୋକମାନଙ୍କ ମୁହଁକୁ ଚାହିଁ ଚାହିଁ, ଶେଷରେ



ଗୋପାଳର ଜଗମୋହନ ନାମକ ଏକ ବୃଷୀ ଉପରେ ଆଖି ପଡ଼ିଲା ଓ ତାହାଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି ସେ କହିଲା, "ଇଏ ମୋ ପାଇଁ ଜାମିନ ରହିଲେ ।"

ଜଗମୋହନ ଜାମିନରେ ରହିବାକୁ ରାଜି ହେଲ ଓ ତୃତୀୟଦିନ ସନ୍ଧ୍ୟା ପର୍ଯ୍ୟନ୍ତ ତାକୁ ସମୟ ଦିଆହେଲା । ଗୋପାଳ ତା'ର ଛେଳି ଓ ମେଣ୍ଢାପଲକୁ ନେଇ ନିଜ ଗାଁକୁ ଚାଲିଗଲା ।

ତୃତୀୟ ଦିନ ଦ୍ୱିପ୍ରହର ଅତୀତ ହେବା ଉପରେ, ଗୋପାଳର ଦେଖା ନାହିଁ । ଗ୍ରାମବାସୀ ଭାବିଲେ, ବିଚାରି ସରଳ ଜଗମୋହନକୁ ଜୀବନ ଦେବାକୁ ହେବ । କାରଣ ଗୋପାଳ ନ ଆସିଲେ ଜାମିନ ଥିବା ଲୋକକୁହିଁ ମୃତ୍ୟୁଦଣ୍ଡ ଭୋଗିବାକୁ ହେବ ।

ସନ୍ଧ୍ୟାରେ ପୁଣି ପଞ୍ଚାୟତ ବସିଲା । ସୂର୍ଯ୍ୟାସ୍ତ ହେବାର ଘଡ଼ିଏ ପୂର୍ବରୁ ଗୋପାଳ ଧଇଁସଇଁ ହୋଇ ଦୌଡ଼ି ଦୌଡ଼ି ଆସି ସେଠାରେ ପହଞ୍ଚିଲା ।

ତାକୁ ଦେଖି ସମସ୍ତେ ଏକ ସମୟରେ କହିଉଠିଲେ, "ସାବାସ୍ ଗୋପାଳ, ଧନ୍ୟ ତୋର କାର୍ଯ୍ୟ ।"

"କଥା ରକ୍ଷା କରିବାକୁ ତ ହେବ ସେଥିପାଇଁ ଲେଉଟି ଆସିଲି ।" ଗୋପାଳ କହିଲା ।

"ମାନବତା ପ୍ରମାଣ କରିବାକୁ ମୁଁ ଜାମିନ ହୋଇଥିଲି ।" ଜଗମୋହନ କହିଲା ।

"ଗୋପାଳ ତା'ର କଥା ରଖିଲା, ଜଗମୋହନ ତା'ର ମାନବତା ରକ୍ଷା କଲା । ତେଣୁ ମୁଁ ମଧ୍ୟ ନିଜକୁ ଦୟାବାନ୍ ପ୍ରମାଣ କରିବାକୁ ଯାଇ ଗୋପାଳକୁ କ୍ଷମା କରି ଦେଉଛି ।" ରାମାନୁଜ କହିଲା ।

ପଞ୍ଚାୟତ ତିନିଜଣଙ୍କର ପ୍ରଶଂସା କଲେ । ସେଦିନ ରାମାନୁଜ ଗୋପାଳକୁ ନିଜର ଅତିଥି ଭାବରେ ନିଜ ଘରକୁ ନିମନ୍ତ୍ରଣ କରିନେଲା ଓ ପରଦିନ ସାଦର ବ୍ୟବହାର ସହ ତାକୁ ବିଦାୟ ଦେଲା ।





# ଉପଦେଶ ଓ ଅଧିକାର

ଏକ ଗାଁରେ ଜଣେ ଯୁବକ ଥିଲା । ନାମ ତା'ର ଶିବରାମ । ତା' ବାପା ମାଆ କେବେଠୁଁ ମରିଯାଇଥିଲେ । ତେବେ ଭଲରେ ଚଳିବା ପାଇଁ ଶିବରାମର ଯଥେଷ୍ଟ ଜମିଜମା ଥିଲା । ପୁଣି ଗ୍ରାମବାସୀଙ୍କ ଆଗରେ ସେ ଥିଲା ଜଣେ ବୁଦ୍ଧିମାନ ଯୁବକ । ତେଣୁ ସମସ୍ତେ ତା'ର ମଙ୍ଗଳ ଚାହୁଁଥିଲେ । ତା' ବାହାଘର ପାଇଁ ସମସ୍ତେ ଭଲ କନ୍ୟାଟିଏ ଖୋଜୁଥିଲେ ।

ଶେଷରେ କିଛି ଦୂରବର୍ତ୍ତୀ ଗ୍ରାମର ଜଣେ ବିଶିଷ୍ଟ ଲୋକଙ୍କ କନ୍ୟା ପାର୍ବତୀ ସହ ଶିବରାମର ବିବାହ ହେଲା । ପାର୍ବତୀ ଦେଖିବାକୁ ଯେମିତି ସୁନ୍ଦରୀ, ତା'ର ସ୍ୱଭାବ ସେମିତି ମଧୁର ଥିଲା ।

କିନ୍ତୁ ବିବାହର ତିନି ଚାରିମାସ ଭିତରେ ଶିବରାମ ତା' ସ୍ତ୍ରୀ ଉପରେ ବିରକ୍ତ ହେବାକୁ ଲାଗିଲା । ପାର୍ବତୀର ଦୋଷ ହେଲା, ସେ ବହୁତ ଖର୍ଚ୍ଚ କରେ । ଶିବରାମର ଆଶଙ୍କା ହେଲା, ସେମିତି ଖର୍ଚ୍ଚ କରିଗଲେ ସେ ଶୀଘ୍ର ସର୍ବସ୍ୱାନ୍ତ ହୋଇଯିବ । ସେ ତେଣୁ ସବୁବେଳେ ପାର୍ବତୀକୁ ଆକଟ କରିବାକୁ ଲାଗିଲା ।

ପାର୍ବତୀ ଗୋଟିଏ ବଡ଼ ପରିବାରର ଝିଅ । ପିଲାବେଳଠୁଁ ତା' ଘରେ ନାନା ପ୍ରକାର ଖାଦ୍ୟ ଦ୍ରବ୍ୟ ପ୍ରସ୍ତୁତ ହେବାର ସେ ଦେଖି ଆସୁଥାଏ । ସ୍ୱାମୀଘରକୁ ଆସି ମଧ୍ୟ ସେ ସେମିତି ନାନା ଜିନିଷ ତିଆରି କରିବାକୁ ଲାଗିଲା । ତେବେ ଶିବରାମ ସେଥିରେ ବାରମ୍ବାର ବିରକ୍ତି ପ୍ରକାଶ କରିବାରୁ ସେ ଅବଶ୍ୟ ସତର୍କ ହେଲା, କିନ୍ତୁ ଅନ୍ୟ ଦିଗରେ ଘରକରଣା ଜିନିଷପତ୍ର କିଣିବାରେ ବହୁତ ଖର୍ଚ୍ଚ କରିପକାଇଲା ।

ଦିନେ ଶିବରାମକୁ ନ ପଚାରି ସେ ଯୋଡ଼ାଏ ଶାଢ଼ୀ କିଣି ପକାଇଥାଏ । ସେଦିନ ଶିବରାମର ମନ ଭଲ ନ ଥିଲା । ସେ ତେଣୁ ପାର୍ବତୀ ଉପରେ ବହୁତ ବିରକ୍ତ ହେଲା । ଦୁହିଁଙ୍କ ଭିତରେ ପ୍ରବଳ କଥା କଟାକଟି ହେଲା ।

ଶିବରାମ କ୍ରୁଦ୍ଧ ହୋଇ ପାର୍ବତୀକୁ ସାଥିରେ

ଜଗଦୀଶ

ଧର ଶ୍ୱଶୁରଘରେ ପହଞ୍ଚିଲା । ଶାଶୁ ଶ୍ୱଶୁରଙ୍କୁ କହିଲା, "ଏଭଳି ବଦ୍‌ଖର୍ଚ୍ଚି ଝିଅକୁ ମୁଁ ଚଳାଇ ପାରିବି ନାହିଁ । ଆପଣ ବୁଝାଇ ସୁଝାଇ ଏହାର ସ୍ୱଭାବ ବଦଳାଇଦିଅନ୍ତୁ, ନଚେତ୍ ବରାବର ଝିଅକୁ ଏଇଠାରେ ରଖନ୍ତୁ ।"

"ବେଶ୍ କଥା, ବାବା ! ତୁମେ ଶାନ୍ତ ହୁଅ । ଝିଅକୁ ବୁଝାଇବା ଦାୟିତ୍ୱ ଆମର ।" ଶାଶୁ ଶିବରାମକୁ କହିଲେ । କାଳେ ଝିଅର ସଂସାର ଭାଙ୍ଗିଯିବ, ସେହି ଡରରେ ବାପା ମାଆ ଜୁଆଁଇ ପ୍ରତି ଅତି କୋମଳ ବ୍ୟବହାର କରିବାକୁ ଲାଗିଲେ ।

ସେତେବେଳେ ଗାଁରେ କାହାର କୌଣସି ପାରିବାରିକ ସମସ୍ୟା ଉପୁଜିଲେ ବି ଗ୍ରାମବାସୀମାନେ ଏକାଠି ବସିଯାଉଥିଲେ ତା'ର ସମାଧାନ ବାହାର କରିବା ପାଇଁ । ପାର୍ବତୀର ମାଆ ପାଖରୁ ଯେତେବେଳେ ଗାଁର ମହିଳାମାନେ ପାର୍ବତୀର ସଙ୍କଟ କଥା ଶୁଣିଲେ, କାମଦାମ ଛାଡ଼ି ସେମାନେ ଆସି ଉପରଓଳି ପାର୍ବତୀ ଘରେ ଠୁଳ ହେଲେ । ଏଭଳି ସୁଯୋଗକୁ ସମସ୍ତେ ଯେପରି ଚାହିଁ ରହିଥାନ୍ତି !

ମହିଳାମାନଙ୍କ ସାଙ୍ଗକୁ ଗ୍ରାମର ବିଶିଷ୍ଟ ପୁରୁଷଲୋକେ ବି ଆସି ନିଜ ନିଜ ପରାମର୍ଶ ଦେବାପାଇଁ ବସିଗଲେ ।

ଅଗଣାରେ ଏକ ଦିଗରେ ମହିଳାମାନେ ବସିଲେ; ଅନ୍ୟ ଦିଗରେ ପୁରୁଷମାନେ ଧାଡ଼ି ହୋଇ ବସିଗଲେ । ପାର୍ବତୀ ସମ୍ପର୍କରେ ଶିବରାମର ଯାହା ଯାହା ଅଭିଯୋଗ ଥିଲା, ତାହା ସେ ଠିଆ ହୋଇ କହିଗଲା । ପାର୍ବତୀ ଗୋଟିଏ କୋଣରେ ମନ ମାରି ବସିଥାଏ ।

ଶିବରାମ ସବୁ କହିସାରିବା ପରେ ଜଣେ



ବୃଦ୍ଧା ପାର୍ବତୀ ପାଖକୁ ଘୁଞ୍ଚିଯାଇ କହିଲେ, "ଝିଅ ! ସ୍ୱାମୀ ମନରେ ବିରକ୍ତି ଉପୁଜାଇବା କ'ଣ ଭଲ କଥା ? ଶିବରାମ ତ କିଛି ମନ୍ଦ କଥା କହି ନାହାନ୍ତି ! ସେ ଚାହିଁଛନ୍ତି ତୁ ବୁଦ୍ଧି ବିଚାରି ଘର ଚଳାଇବୁ । ସବୁକଥା ମାନିଗଲେ ତ ଯାଏ, ପ୍ରତିବାଦ କରିବା କ'ଣ ଦରକାର ? ମୁଁ ଷାଠିଏ ବର୍ଷ ହେଲି ବୋହୂ ହୋଇ ଆସିଲିଣି । କେବେ ମୋ ବିରୁଦ୍ଧରେ ଅଭିଯୋଗ କରିବା ପାଇଁ ମୋ ସ୍ୱାମୀ ସୁଯୋଗ ପାଇଛନ୍ତି ?"

ଆଉ ଜଣେ ମହିଳା ବି ପରେ ପରେ ପାର୍ବତୀ ପାଖକୁ ଘୁଞ୍ଚିଯାଇ ଆରମ୍ଭ କଲେ, "ଝିଅରେ ! ଅବିବେକୀ ହୋଇ ନିଜ ସର୍ବନାଶକୁ ଡାକି ଆଣିବୁ ସିନା, ଆଉ କାହାର କ'ଣ ଯିବ? ସଂସାର କଥା ତୁ ଜାଣିନାହୁଁ ବୋଲି ସିନା ସ୍ୱାମୀଙ୍କୁ ରାଗେଇବାକୁ ସାହସ କରୁଛୁ ! ମୋ ଜୀବନରେ ମୁଁ ବହୁତ ଦେଖିଛି, ବହୁତ ଶୁଣିଛି, ବହୁତ ଜାଣିଛି । ନିଜ ଜିଗରପଣିଆ ଛାଡ଼ି ଏଣିକି ତାଙ୍କ ମନ ନେଇ ଚଳିବୁ, ହେଲା ?"

ତୃତୀୟ ମହିଳାଟିଏ ପାର୍ବତୀକୁ ଆଉଁସି ପକାଇ କହିଲା, "ଝିଅଲୋ ! ପେଟକୁ ମୁଠିଏ ମିଳିଲେ, ପିନ୍ଧିବାକୁ ଖଣ୍ଡେ ହେଲେ ଝିଅପିଲାର ହେଲା । ଆଉ କ'ଣ ଦରକାର ? ସ୍ୱାମୀ ଆଗରେ ପାଟି ଫିଟାଇବାହିଁ ଭୁଲ । କ'ଣ ଦରକାର କହିଲୁ ?"

ପାର୍ବତୀକୁ ପ୍ରଥମେ କାନ୍ଦ ଲାଗିଲା । ସେ ଦେଖିଲା, ବିଶିଷ୍ଟ ପୁରୁଷ ଲୋକମାନେ ଚୁପ୍ ହୋଇ ବସିଛନ୍ତି । ତା' ବାପା ମଧ୍ୟ ପାଟି ଫିଟାଉ ନାହାନ୍ତି । ସେ ଯେମିତି କୌଣସି ଅପରାଧ କରିଛି, ସମସ୍ତେ ସେହିଭଳି ଦୃଷ୍ଟିରେ ତା' ଆଡ଼କୁ ଅନାଉଛନ୍ତି ।

ହଠାତ୍ ସେ ନିଜ ଭିତରେ ଉତ୍ତେଜନା ଅନୁ-



ଭବ କଲା । ଏତେ ବେଶୀ ଛଳନା ସେ କାହିଁକି ସହିପିବ ?

ସେତିକିବେଳେ ଆହୁରି ଜଣେ ମହିଳା ତାକୁ କିଛି କହିବା ପାଇଁ ତା' ଆଡ଼କୁ ଘୁଞ୍ଚି ଆସୁଥିଲେ । ପାର୍ବତୀ କହିଲା, "ଥାଉ । ମୋତେ ଆଉ କେହି କିଛି କହିବା ଦରକାର ନାହିଁ । ମୁଁ କେବଳ ଗୋଟିଏ କଥା ମୋ ଉପଦେଶଦାତ୍ରୀମାନଙ୍କୁ ପଚାରିବାକୁ ଚାହେଁ : ସେମାନଙ୍କର ଏ ସବୁ ଉପଦେଶ ଦେବାର ଯୋଗ୍ୟତା ଅଛି ତ ? ମୁଁ ପିଲାବେଳରୁ ସମସ୍ତଙ୍କୁ ଜାଣିଛି । ପ୍ରଥମ ଜଣକ ସ୍ୱାମୀକୁ ଲୁଚାଇ ଘରୁ ଚାଉଳ ବିକି କରି ସେଥିରେ ଗହଣା ବନାନ୍ତି । ସ୍ୱାମୀ ଆଗରେ କୁହନ୍ତି କି ଗହଣା ବାପଘରୁ ଆସିଛି ! ଦ୍ୱିତୀୟ ଜଣକ ଆଜି ମୁଁ ଏବଂ ମୋ ସ୍ୱାମୀଙ୍କ ଭିତରେ ସୌହାର୍ଦ୍ୟ ଆଣିବାକୁ ଚେଷ୍ଟା କରୁଛନ୍ତି ଯେ, ସେ ନିଜେ ଜୀବନରେ କେତେ ଘର ଭାଙ୍ଗିଥିବେ ତା'ର ହିସାବ ନାହିଁ । ସବୁଦିନ ଖରାବେଳେ ଯା' ତା' ଘରକୁ ଯାଇ ସ୍ୱାମୀ ପାଖରେ ସ୍ତ୍ରୀ ବିରୁଦ୍ଧରେ, ସ୍ତ୍ରୀ ପାଖରେ ସ୍ୱାମୀ ବିରୁଦ୍ଧରେ ସୁଯୋଗ ଉକ୍ତି କହିବା ତାଙ୍କର ନିଶା । ତୃତୀୟ ଜଣକ ସ୍ୱାମୀଙ୍କ ଘରୁ ଜିନିଷପତ୍ର ଲୁଚାଇ ବାପଘରକୁ ପଠାନ୍ତି । ଏହି ହେଲା ଲୋକଙ୍କ ଅବସ୍ଥା !"

ପାର୍ବତୀର ତେଜପୂର୍ଣ୍ଣ କଥାରେ ସଭିଏଁ ସ୍ତବ୍ଧ ହୋଇ ବସି ରହିଲେ । କେହି ପ୍ରତିବାଦ କରିବା ତ ଦୂରର କଥା, ମନେହେଲା ସଭିଏଁ ଗ୍ଲାନି ଅନୁଭବ କରୁଛନ୍ତି । ଶିବରାମ ବୁଝିଲା, ପାର୍ବତୀର ସତକଥା ବିରୁଦ୍ଧରେ ପଦିଏ କହିଲା ଭଳି ସାହସ କାହାରି ନାହିଁ । ହଠାତ୍ ତା'ର ମନେ ହେଲା, ପାର୍ବତୀ ତୁଳନାରେ ଅନ୍ୟମାନେ କେତେ ମାମୁଲି ଦିଶୁଛନ୍ତି ସତେ ! ମିଥ୍ୟାଚାରକୁହିଁ ସମସ୍ତେ ଆଦର୍ଶ ବୋଲି ଧରିନେଇ ସେଥିରେ ପୁଣି ଅନ୍ୟକୁ ପ୍ରଭାବିତ କରିବାକୁ କୁଣ୍ଠା ବୋଧକରୁନାହାନ୍ତି !

ପାର୍ବତୀ ପ୍ରତି ଶିବରାମର ମନୋଭାବ ବଦଳିଗଲା । ସେ "ଯାହା ହେବାର ହେଲାଣି; ଯିବା" କହି ପାର୍ବତୀକୁ ଧରି ଘରକୁ ଫେରିଲା । ସେହିଦିନରୁ ଆଉ ଦୁହିଁଙ୍କ ଭିତରେ ଝଗଡ଼ା ହେବାର ଶୁଣାଯାଇନାହିଁ ।





# ମିଥ୍ୟା ପ୍ରଶଂସା

ପୂର୍ବେ ଗୋଟିଏ ଗାଁରେ ଜଗନ୍ନାଥ ନାମରେ ଜଣେ ବ୍ୟକ୍ତି ଥିଲା । ସେ ଟିକିଏ କଥାରେ ଚିଡ଼ିଯାଏ; ହେଲେ ତା'ର ଗୋଟିଏ ବଡ଼ ଦୁର୍ବଳତା ହେଲା ନିଜର ପ୍ରଶଂସା ପାଇଲେ ଖୁବ୍ ଖୁସି ହୁଏ ।

ପଡ଼ିଶାଘରର ବୁଢ଼ା ତା'ଠୁଁ ଯେବେ ତେବେ ଟଙ୍କା ଧାର ନିଏ । କିନ୍ତୁ ଟଙ୍କା ପରିଶୋଧ କରିବା ବେଳ ଆସିଲେ ବୁଢ଼ୀ ଆସି କିଛି ପ୍ରଶଂସା କରି ପାମ୍ପୁଲେଇ ଆହୁରି ଅଧିକା ଟଙ୍କା ଧାର ନେଇଯାଏ ସିନା, ପୁରୁଣା ଟଙ୍କା ସୁଝେ ନାହିଁ । ବୁଢ଼ୀ କୁହେ, "ପୁଅ ! ପୁରୁଣା କରଜ ସହିତ ଏ ଟଙ୍କା ମିଶାଇ ମୁଁ ଆସନ୍ତା ମାସରେ ଦେଇଦେବି । ମୁଁ ଜାଣେ ତୁମ ମନ ଲହୁଣୀ ପରି କୋମଳ ।" ବୁଢ଼ୀର କଥା ଶୁଣି ଜଗନ୍ନାଥ ଫୁଲିଯାଏ ଓ ଅଧିକ ଟଙ୍କା ଦେଇ ବୁଢ଼ୀକୁ ବିଦା କରେ । ଏ ସବୁ ଦେଖି ଜଗନ୍ନାଥର ସ୍ତ୍ରୀ କମଳା ବହୁତ ଚିଡ଼େ ।

ଏମିତି ଏମିତି କେତେମାସ କଟିଗଲା । ସବୁ-ଥର ବୁଢ଼ୀ କିଛି ନା କିଛି ବାହାନା କରି ଅଧିକା ଟଙ୍କା ନିଏ ଆଉ ଜଗନ୍ନାଥର ଖୁବ୍ ପ୍ରଶଂସା କରେ । ସିଏ ମଧ୍ୟ ଖୁସି ହୋଇ ବୁଢ଼ୀକୁ ଟଙ୍କା ଦିଏ । କମଳା ବୁଢ଼ୀର ଏ ବଦଭ୍ୟାସ ପାଇଁ ମନେ ମନେ ବିରକ୍ତ ହୁଏ; କିପରି ତା'ର ସେ ଅଭ୍ୟାସ ଛଡ଼ାଇବ ସେଇ ସୁଯୋଗ ଖୋଜୁ-ଥାଏ ।

ଥରେ ଜଗନ୍ନାଥର ମାମୁଁ ତାଙ୍କ ଘରକୁ ଆସିଲେ । ସେତେବେଳେ ଜଗନ୍ନାଥ ଘରେ ନ ଥାଏ । କମଳା ଜଗନ୍ନାଥର ଦୁର୍ବଳତା ବିଷୟ ମାମୁଁଙ୍କୁ କହିଲା । ସଞ୍ଜକୁ ଜଗନ୍ନାଥ ଫେରି ଆସିଲା । ଖାଇବାବେଳେ ଦୁହିଁଙ୍କୁ ପାଖରେ

ସୁମନ ଦତ୍ତ

ବସାଇ ମାମୁଁ କହିଲେ, "ଆମ ଜଗନ୍ନାଥକୁ ଦେଖି ମୋର ଖୁବ୍ ଆନନ୍ଦ ହୋଇଛି । ସେ ତା'ର ବାପା ଜେଜେଙ୍କ ସମ୍ପତ୍ତି ଖୁବ୍ ସୁନ୍ଦର ଭାବରେ ରଖି ଥୋଇ ଚଳଉଛି । ମୋ ଦାଦା ପୁଅ ଭାଇ କିନ୍ତୁ ଠିକ୍ ଏଇ ବୟସ ହେବା ବେଳକୁ ଘରର ସବୁ ସମ୍ପତ୍ତି ଅନ୍ୟକୁ କରଜ ଦେଇ ଦେଇ ସାରି ଦେଲା ।"

ଏ କଥା ଶୁଣି କମଳା ପଡ଼ୋଶୀ ଘରର ଧାର ନେବା ପଦ୍ଧତି ବିଷୟରେ ସବୁ ବର୍ଣ୍ଣନା କଲା । ଏ କଥା ଶୁଣି ମାମୁଁ ହସି ହସି କହିଲେ, "ଆରେ ବୋହୂ, ତୁ ଜଗନ୍ନାଥକୁ ଭୁଲ ଭାବୁଛୁ କି ? ସେ ଯାହା ବି କାମ କରେ ଭବିଷ୍ୟତକୁ ମନରେ ରଖି କରେ । ଆସନ୍ତା ମାସରେ ତୁମର ବିବାହର ବାର୍ଷିକ ଉତ୍ସବ ହେବ । ସେଥିପାଇଁ ଜଗନ୍ନାଥ ସେମାନଙ୍କଠୁ ଟଙ୍କା ଆଣୁନି, କାରଣ ଏକାବେଳେ ଆଣିଲେ ତୋ' ପାଇଁ ଗହଣା ବନାଇ ଦେବ ।"

ଏ କଥା ଶୁଣି ଜଗନ୍ନାଥ ଉତ୍ସାହିତ ହୋଇ କହିଲା, "ହଁ ହଁ, ମାମୁଁ, ଠିକ୍ କହୁଛ, କମଳାର ସୁନାଚୁଡ଼ି ବନାଇବା ପାଇଁ ମୁଁ ଏ ପର୍ଯ୍ୟନ୍ତ ସେ ଟଙ୍କା ସେମାନଙ୍କଠାରୁ ଅସୁଲ କରିନାହିଁ ।"

"ତେବେ ସେମାନେ ଧାରଟଙ୍କା ଫେରାଇଲେ ତ ?" କମଳା କହିଲା ।

"ସେ କଥା ହେବନାହିଁ । ମୋ ଭଣଜା ସୁଧ ସହିତ ସବୁ ମୂଳ ଟଙ୍କା ଅସୁଲ କରିବ । ସେ କ'ଣ କମ୍ ବୁଦ୍ଧିମାନ ?" ମାମୁଁ କହିଲେ ।

ପରଦିନ ଜଗନ୍ନାଥ ଯାଇ ଯେ କୌଣସି ମତେ ସବୁ ଟଙ୍କା ସେମାନଙ୍କଠାରୁ ଅସୁଲ କଲା । ସୁନାଚୁଡ଼ି ତିଆରି ହେବା ପର୍ଯ୍ୟନ୍ତ ମାମୁଁ ସେଇଠି ରହିଲେ ।

ପରେ କମଳା ଖୁସି ହୋଇ ମାମୁଁଙ୍କ ପାଖରେ ନିଜର କୃତଜ୍ଞତା ପ୍ରକାଶ କଲା ଏବଂ ଏ କଥା ମଧ୍ୟ ମନେ ରଖିଲା, ମିଥ୍ୟା ପ୍ରଶଂସାକୁ କାଟି-ବାର ଔଷଧ ହେଉଛି ମିଥ୍ୟା ପ୍ରଶଂସା ।





# ଛଦ୍ମବେଶୀ !

ଶୃଙ୍ଗେଶ୍ୱ ବୋଲି ଗୋଟିଏ ଗାଁ ଥିଲା । ସେଠାରେ ଜଣେ ଧନୀ ଦରିଦ୍ରବ୍ରାହ୍ମଣଙ୍କ ପାଇଁ ଗୋଟିଏ ଅତିଥିଶାଳା ଖୋଲିଲେ । ସେଠାରେ ପ୍ରତ୍ୟହ ପାଞ୍ଚଜଣଙ୍କୁ ଖାଇବାକୁ ଦିଆଯାଏ । କିନ୍ତୁ ଯିବା ଆସିବା ଯାତ୍ରୀଙ୍କୁ ସେଠାରେ ଏକାଧିକ୍ରମେ ଦଶଦିନ ପର୍ଯ୍ୟନ୍ତ ରହିବାକୁ ଓ ଖାଇବାକୁ ଦିଆ ଯାଉଥାଏ । ତା'ଛଡ଼ା ପ୍ରତ୍ୟେକ ଦିନ ପ୍ରତ୍ୟେକଙ୍କୁ ଦକ୍ଷିଣା ସ୍ୱରୂପ ଗୋଟିଏ କରି ଟଙ୍କା ମିଳୁଥାଏ ।

ଶୃଙ୍ଗେଶ୍ୱର ପାଖ ଗାଁରେ ନାରାୟଣ ଭଟ୍ଟ ନାମକ ଜଣେ ବ୍ରାହ୍ମଣ ଥିଲା । ସେ ଗରିବ ନ ନ ଥିଲା । କିନ୍ତୁ ଭୀଷଣ ଲୋଭୀ ଥିଲା । ତା' ମୁଣ୍ଡକୁ ଏକ ବୁଦ୍ଧି ଯୁଟିଲା ଯେ ସେହି ଅତିଥିଶାଳାରେ କୌଣସି କ୍ରମେ ମାସେ ରହି ପାରିଲେ ଖାଇବା ମଧ୍ୟ ମାଗଣା ମିଳିବ ଓ ମାସରେ ତିରିଶଟି ଟଙ୍କା ମଧ୍ୟ ମିଳିବ । ଏପରି ଭାବି ସେ ନିଜର ବେଶ ବଦଳାଇ ଜଣେ ବାବାଜୀ ପରି ଦାଢ଼ୀ, ନଖ ଓ କେଶ ବଢ଼ାଇ ସେଠାରେ ଯାଇ ରହିଲା ।

ସେହି ଅତିଥିଶାଳାରେ ସବୁ ବୁଝାସୁଝା କରିବାକୁ କୃଷ୍ଣଚନ୍ଦ୍ର ନାମରେ ଜଣେ ଲୋକ ନିଯୁକ୍ତ ହୋଇଥିଲା । ସେ ଉକ୍ତ ଗ୍ରାମର ହନୁମାନ ମନ୍ଦିରର ପୂଜକ । ମନ୍ଦିରର ବେଶୀ ଆମଦାନୀ ନ ଥିଲା । ତେଣୁ ଉତ୍ସବର ଖର୍ଚ୍ଚ ଉଠାଇବାକୁ ସେ ଅତିଥିଶାଳାରେ ଏକ ପଇସା ଘଡ଼ି ବସାଇଥାଏ । ସେଇଟି ତା' ଖଟ ପାଖରେ ଥାଏ । ସେ ବ୍ରାହ୍ମଣମାନଙ୍କୁ ଦକ୍ଷିଣା ବାଣ୍ଟିବା ପରେ ଅନୁରୋଧ କରେ କିଛି ପଇସା ସେଇ ଘଡ଼ିରେ ପକାଇବାକୁ । ବ୍ରାହ୍ମଣମାନେ କିଛି କିଛି ଦେଉଥିଲେ । କିନ୍ତୁ ଲୋଭୀ ନାରାୟଣ ଭଟ୍ଟ କିଛି·

କୁମାରୀ ଚନ୍ଦ୍ରକଳା

ଦେଲା ନାହିଁ । ନ ଶୁଣିଲା ପରି ରହିଲା ।

ଠିକ୍ ଦଶଦିନ ପରେ ଦିନେ ସକାଳେ ନାରାୟଣ ଭଟ୍ଟ ଚୁପ୍‌ଚାପ୍ ଉଠି ବାହାରକୁ ଚାଲିଗଲା । କିଛି ସମୟ ପରେ ଦାଢ଼ୀ କାଟି, ବେଶ ବଦଳାଇ, ନାମ ବଦଳାଇ ପୁଣି ଫେରିଆସି ଆହୁରି ଦଶଦିନ ରହିଲା । ପୁଣି ଦଶଦିନ ପରେ ମୁଣ୍ଡ ଲଣ୍ଡା କରି, ନଖ କାଟି, ନାମ ବଦଳାଇ ଆହୁରି ଦଶଦିନ ରହିଲା ।

ମାସ ଶେଷରେ ନାରାୟଣ ଭଟ୍ଟ ଭୋଜନ କରି ନିଜ ଗାଁକୁ ଯିବାପାଇଁ ପ୍ରସ୍ତୁତ ହେଉଛି, ଠିକ୍ ସେହି ସମୟରେ କୃଷ୍ଣଚନ୍ଦ୍ର ସିପାହୀମାନଙ୍କୁ ଧରି ସେଠାରେ ପହଞ୍ଚିଲା ଓ ନ୍ୟାୟାଧୀଶଙ୍କ ପାଖକୁ ଯାଇ ଫେରାଦ ହେଲା ।

ନ୍ୟାୟାଧୀଶ ପଚାରିଲେ, "ଭାଇ, କୁହତ, ସେ ଯେତେବେଳେ ବେଶ ବଦଳାଇଲେ, ତୁମେ କିପରି ତାକୁ ଚିହ୍ନିଲ ?"

କୃଷ୍ଣଚନ୍ଦ୍ର ଉତ୍ତର ଦେଲେ, "ବେଶ ଓ ନାମ ସହଜରେ ବଦଳେ, କିନ୍ତୁ ଗୁଣ ବଦଳେ ନାହିଁ । ସେ ଆରମ୍ଭରୁ ହିଁ ହନୁମାନଜୀଙ୍କ ପଇସା ଘଡ଼ିରେ ପଇସା ପକାଇ ନ ଥିଲା । ଦ୍ୱିତୀୟଥର ବି ନୁହେଁ । ତେଣୁ ସ୍ୱତଃ ମୋର ସନ୍ଦେହ ହେଲା ଓ ମୁଁ ବୁଝି ଦେଖିଲି ପ୍ରକୃତରେ ମୋର ଧାରଣା ସତ । କିନ୍ତୁ ମୁଁ ଦେଖୁଥିଲି କେତେଦିନ ସେ ଏପରି ସତର୍କ ରହୁଛି । ମାସ ପୂରିଯିବାରୁ ସେ ଘରକୁ ଯିବା ପାଇଁ ପ୍ରସ୍ତୁତ ହେବାରୁ ମୁ ତାକୁ ଆପଣଙ୍କନିକଟକୁ ଧରି ଆଣିଲି । ସେ ଯଦି ଟିକିଏ ବଦାନ୍ୟ ହୋଇ ଅନ୍ତତଃ ଦ୍ୱିତୀୟଥର ପଇସାଟିଏ ହେଲେ ବି ଘଡ଼ିରେ ପକାଇଥାନ୍ତା, ତେବେ ମୋ ମନକୁ କୌଣସି ସନ୍ଦେହ ଛୁଇଁ ନଥାନ୍ତା ।"

ନ୍ୟାୟାଧୀଶ ନାରାୟଣ ଭଟ୍ଟକୁ ପାଞ୍ଚଶ ଟଙ୍କା ଜୋରିମାନା ଦେବାକୁ ଆଦେଶ କଲେ । ଦୁଇ ଗାଁର ଲୋକେ ଖୁବ୍ ଖୁସି ହେଲେ ଓ ଭାବିଲେ, ଯାହା ହେଉ ଲୋଭୀକୁ ଉଚିତ୍ ଶାସ୍ତି ମିଳିଛି ।





# ବୀର ହନୁମାନ

ବୀର ହନୁମାନ ସୂକ୍ଷ୍ମ ରୂପରେ ପାତାଳ-ଲଙ୍କାର ସିଂହଦ୍ୱାର ଅତିକ୍ରମ କରି ସେ ମୂଲକ ଭିତରେ ପ୍ରବେଶ କଲେ । ସେ ଗୋଟାଏ ଦିଗରୁ କୋଳାହଳ ଶୁଣିପାରି ସେହି ଦିଗକୁ ଅଗ୍ରସର ହେଲେ ।

କିଛି ଦୂରରେ ଗୋଟିଏ ବିରାଟ ପର୍ବତ ଗୁମ୍ଫା ଭିତରେ ସେ ଦେଖିପାରିଲେ ଏକ କାଳୀ ମନ୍ଦିର । ମନ୍ଦିର ଆଗରେ ଥିଲା ସୁନ୍ଦର ତୋରଣ । ପ୍ରାଙ୍ଗଣରେ ଜଳୁଥିଲା ମଣିମାଣିକ୍ୟର ଦୀପ । ମହିରାବଣର ଅନୁଚର-ରାକ୍ଷସମାନେ ଅଦୂରରେ ମଦ୍ୟପାତ୍ରମାନ ସଜାଉଥିଲେ ଓ କେହି କେହି ନୃତ୍ୟ ଗୀତ କରୁଥିଲେ ।

ମନ୍ଦିରର ମୁଖଶାଳା ଡଙ୍କା, ଡମ୍ବରୁ ଓ ବିଭିନ୍ନ ବାଦ୍ୟଯନ୍ତ୍ରରେ ନିନାଦିତ ଥିଲା ।

ହନୁମାନ ଅନ୍ଦାଜ କଲେ, ପ୍ରାତଃକାଳ ହେଲେ ରାମ ଲକ୍ଷ୍ମଣଙ୍କୁ କାଳୀଙ୍କ ଆଗରେ ବଳି ଦେବାର ଯୋଜନା ହୋଇଛି । ସେ ତତ୍-କ୍ଷଣାତ୍ ଗୋଟିଏ ଝିଟିପିଟି ରୂପ ଧରି ଗୁମ୍ଫାର ନିମ୍ନ ଦେଶରେ ଥିବା ମନ୍ଦିରର ଗର୍ଭଗୃହ ଭିତରେ ଉପସ୍ଥିତ ହେଲେ । ସେଠାରେ କାଳୀଙ୍କ ଚରଣ ପାଖରେ ନାନାଦି ଅର୍ଘ୍ୟ ସଜାଇ ରଖା ହୋଇଥାଏ ।

ସେତେବେଳେ ଗର୍ଭଗୃହ ଭିତରେ କୌଣସି ରାକ୍ଷସ ନ ଥିଲେ । ହନୁମାନ ଝିଟିପିଟି ରୂପ ତ୍ୟାଗ କରି ନିଜ ରୂପରେ କାଳୀଙ୍କ ଆଗରେ ଠିଆ ହୋଇ ପ୍ରଶ୍ନ କଲେ, "ହେ ମାତା ! ତୁମେ



କ'ଣ ପ୍ରକୃତରେ ରାମ ଲକ୍ଷ୍ମଣଙ୍କୁ ବଳି ରୂପେ ଗ୍ରହିଁ ?'

ସଙ୍ଗେ ସଙ୍ଗେ କାଳୀ ସୌମ୍ୟ ରୂପରେ ପ୍ରକଟିତ ହୋଇ କହିଲେ, "ହେ ହନୁମାନ ! ମହୀରାବଣର ଆୟୁ ଶେଷ ହୋଇ ଗଲାଣି । ଭୟ କରନା ।"

କାଳୀ ଆଶୀର୍ବାଦ ଦେଇ ପୁଣି ନିଜ ପାଷାଣ-ରୂପ ଗ୍ରହଣ କଲେ । ହନୁମାନଙ୍କ ଆନନ୍ଦ କହିଲେ ନ ସରେ । ସେ ମୂର୍ତ୍ତି ପଛପଟକୁ ଯାଇ ଲୁଚି ରହି ରନ୍ଧ୍ର ପଥରେ ଉପରେ ଯାହା ଯାହା ହେଉଛି ତାହା ଲକ୍ଷ୍ୟ କରିବାକୁ ଲାଗିଲେ ।

ସେତେବେଳେ ମହୀରାବଣର ଅନ୍ତଃପୁର ଭିତରୁ ପ୍ରବଳ କୋଳାହଳ ଶୁଭୁଥାଏ । ରାମ ଲକ୍ଷ୍ମଣଙ୍କ ବଳି ପରେ ପରେ ଚନ୍ଦ୍ରସେନା ସହିତ ମହୀରାବଣର ବିବାହ ହେବା କଥା । ସେଥି ପାଇଁ ଜୋର୍ ସୋର୍ ଆୟୋଜନ ଚାଲିଥାଏ । ଅନ୍ତଃ-ପୁରର ପରିଚାରିକା କଣ୍ଟକୀ ଅସୁରୁଣୀ ଚନ୍ଦ୍ର-ସେନାଙ୍କୁ ଅଳଙ୍କାର-ଭୂଷିତା କରୁଥାଏ । ମଧ୍ୟେ ମଧ୍ୟେ ଚନ୍ଦ୍ରସେନାଙ୍କ ଗାଲରେ ଗେଲରେ ଚିମୁଡ଼ା ମାରି ମହୀରାବଣର ମହିମା କଥା ତାଙ୍କୁ ଶୁଣାଉଥାଏ ।

କ୍ରମେ ମହଲ ପ୍ରାଙ୍ଗଣରେ କୋଳାହଳ ଅଧିକରୁ ଅଧିକ ଶୁଭିଲା । ରାମ ଲକ୍ଷ୍ମଣଙ୍କୁ ଦୁଇଟି ପ୍ରତିମା ଭଳି ଗୋଟିଏ ଗାଡ଼ି ଉପରେ ଠିଆ କରାଇ ଦଉଡ଼ିରେ କସି କରି ବାନ୍ଧିଦିଆ ହୋଇ-ଥାଏ । ସେମାନଙ୍କ ଗଳାରେ ଜବା ଫୁଲର ମାଳା ପକାଇ ଦିଆ ହୋଇଥାଏ । ସର୍ପ-ରାକ୍ଷସମାନେ ଗାଡ଼ିକୁ ଟାଣୁଥା'ନ୍ତି । ରାମ ଲକ୍ଷ୍ମଣଙ୍କୁ ଶୋଭା ଯାତ୍ରାରେ କାଳୀ ମନ୍ଦିରକୁ ନିଆ ହେଉଥିଲା ।

ରାକ୍ଷସମାନଙ୍କ କୋଳାହଳ ଶୁଣି ଚନ୍ଦ୍ରସେନା ତା'ର ହେତୁ ଅନୁମାନ କରିନେଲେ । ସେ ହଠାତ୍ ଉଠି ଠିଆ ହୋଇ ପଡ଼ିଲେ । କଣ୍ଟକୀ ତାଙ୍କୁ ରୋକିବାକୁ ଚେଷ୍ଟା କଲା । କିନ୍ତୁ ସେ ବିଜୁଳି ବେଗରେ ପ୍ରାଙ୍ଗଣ ଟପି ରାସ୍ତାରେ ଯାଇ ଠିଆ ହେଲେ । ସେ ଦେଖିଲେ ରାମଙ୍କୁ ହଳଦିଆ

ଲୁଗା ପିନ୍ଧାଇ, କପାଳରେ ଲାଲ ସିନ୍ଦୂର ବୋଳି, ଗଳାରେ ଜବାହାର ପିନ୍ଧାଇ ମନ୍ଦିର ଆଡ଼େ ନିଆ ଯାଉଛି । ସେ ଦୃଶ୍ୟ ଦେଖି ଚନ୍ଦ୍ରସେନା ମୂର୍ଚ୍ଛା ଗଲେ ।



ଚନ୍ଦ୍ରସେନାଙ୍କ ପଛେ ପଛେ ଦୌଡ଼ି ଆସି କଣ୍ଟକା ରାକ୍ଷସୀ ସେଠାରେ ପହଞ୍ଚିଲା ଓ ଚନ୍ଦ୍ରସେନାଙ୍କୁ ସେହି ବେହୋସ ଅବସ୍ଥାରେ ଚାବୁକ୍‌ରେ ପିଟିବାକୁ ଲାଗିଲା । କିନ୍ତୁ ଅନେକ ବେଳଯାଏ ଚନ୍ଦ୍ରସେନାଙ୍କ ଚେତା ନ ଫେରିବାରୁ ସେ ତାଙ୍କୁ ଟେକି ନେଇ ଯାଇ ଉପର ମହଲାର ଏକ କକ୍ଷରେ ବନ୍ଦୀ କଲା ।

ତା'ପରେ କଣ୍ଟକୀ ମନ୍ଦିର ଆଡ଼କୁ ଦୌଡ଼ିଲା । କାରଣ ସେ ଥିଲା କାଳୀଙ୍କର ପ୍ରଧାନ ଅର୍ଚ୍ଚନାକାରିଣୀ । ମହୀରାବଣ ଓ ଅହୀରାବଣ କଣ୍ଟକୀ ହାତରୁହିଁ ମଦ୍ୟ ଗ୍ରହଣ କରି ପିଉଥିଲେ । ଏହାହିଁ ଥିଲା ବିଧି ।

ରାକ୍ଷସମାନେ ମଦ୍ୟ ଦ୍ୱାରା ଦେବୀ ଆରାଧନା କରିବାକୁ ଆରମ୍ଭ କଲେ । ଦେବୀ ଥା'ନ୍ତି ଗୁମ୍ଫାର ନିମ୍ନଭାଗରେ ଗର୍ଭଗୃହ ମଧ୍ୟରେ । ଉର୍ଦ୍ଧ୍ୱରୁ ଏକ ଛିଦ୍ର ପଥରେ ତାଙ୍କ ପାଇଁ ମଦ୍ୟ ଢାଳି ଦିଆ ହେଉଥାଏ ।

ସେ ମଦ୍ୟଧାରା ଦେଖି ହନୁମାନ ଘୃଣାରେ ଶିହରି ଉଠିଲେ ଓ କଣ୍ଠସ୍ୱର ବଦଳାଇ କହିଲେ, "ଆବେ, ଏଥର ମଦ ଛାଡ଼ି ଦୁଧ ଢାଳ !"

ସେ ନିର୍ଦ୍ଦେଶ ଶୁଣିବା ମାତ୍ରେ ଉପରେ ରାକ୍ଷସମାନଙ୍କ କୋଳାହଳ ବନ୍ଦ ହୋଇଗଲା । ଗର୍ଭଗୃହରେ ପ୍ରସାଦ ହୋଇସାରି ମଦ୍ୟଧାରା ପୁଣି ଗୁମ୍ଫା ବାହାରକୁ ଝରି ଆସିଲେ ତାକୁ ପିଇବା ପାଇଁ ରାକ୍ଷସମାନେ ଲାଳାୟିତ ହୋଇ ରହିଥିଲେ । ଦେବୀ ହଠାତ୍ ମଦ୍ୟଧାରା ବନ୍ଦ କରିବାକୁ କହିବାରୁ ସେମାନେ ହତାଶ ହେଲେ ।

ଗାଡ଼ି ଉପରେ ବନ୍ଧା ହୋଇଥିବା ରାମ ଲକ୍ଷ୍ମଣଙ୍କ ଆଡ଼କୁ ଅନାଇ ଟିକିଏ ହସିଲେ । କଣ୍ଟକା ଦେବୀଙ୍କ ନିର୍ଦ୍ଦେଶ ଶୁଣି କାବା ହୋଇ ମହୀରାବଣ ଆଡ଼କୁ ଅନାଇଲା । ମହୀରାବଣ ମଧ୍ୟ କମ ବିସ୍ମିତ ହୋଇ ନ ଥିଲା । ସେ ଅନାଇଲା



ତା' ଅଗ୍ରଜ ଅହିରାବଣ ଆଡ଼କୁ । ଅହିରାବଣ ଜାଣି ଭଳି କହିଲା, "ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ରାମଲକ୍ଷ୍ମଣ ସାତ୍ତ୍ୱିକ ସ୍ୱଭାବର ହୋଇଥିବା ହେତୁ ସେ ବଳି ସାଥିରେ ମଦ୍ୟ ଠିକ୍ ହେବନାହିଁ ବୋଲି ଦେବୀ ଦୁଧ ଚାହୁଁଛନ୍ତି ।"

"ଆଚ୍ଛା ! ଏପରି କଥା ! ତୁମେ ଦେବୀଙ୍କ ମନକଥା ଭଲ ଭାବରେ ଜାଣ ବୋଲି ସିନା ଏ କୈଫିୟତ୍ ଦେଇପାରିଲ ! ନ ହେଲେ ତ ଆମେ ଦେବୀଙ୍କ ନୂଆ ଖିଆଲ ଶୁଣି ଡରି ଯାଇଥା'ନ୍ତୁ !" ଏହା କହି ମହୀରାବଣ ପର୍ଯ୍ୟାପ୍ତ ପରିମାଣ ଦୁଧ ଆଣି ଢାଳିବା ପାଇଁ ରାକ୍ଷସମାନଙ୍କୁ ଆଦେଶ ଦେଲା ।

ସଙ୍ଗେ ସଙ୍ଗେ କଳସ କଳସ ଦୁଧ ଆସିଲା ଓ ଛିଦ୍ର ପଥରେ ଗର୍ଭଗୃହ ମଧ୍ୟକୁ ଢଳା ହେଲା । ହନୁମାନ ଛିଦ୍ର ତଳେ ମୁହଁ ରଖି ଦୁଧତକ ପିଇ-ଯିବାକୁ ଲାଗିଲେ । ସେ ବେଶ୍ ତାଜା ଅନୁଭବ କଲେ ।

ଏହିପରି ଭାବରେ ପ୍ରାଥମିକ ଆରାଧନା ଶେଷ ହେବା ଉତ୍ତାରୁ ମହୀରାବଣ ଗର୍ଭଗୃହର ଦ୍ୱାର ପାଖକୁ ଆସି କହିଲା, "ଦେବୀ ! ଏଥର ତୁମର ଦର୍ଶନ ପାଇଁ ମୁଁ ଆସିବି ତ ?"

ଦେବୀଙ୍କ ପଛପଟରୁ ଉତ୍ତର ଗଲା, "ପ୍ରଥମେ ତୋ ବଡ଼ ଭାଇ ଅହିରାବଣ ଫଳ ଫୁଲର ନୈବେଦ୍ୟ ଧରି ଆସୁ ।"

ମହୀରାବଣ ଫେରିଯାଇ ଅହିରାବଣକୁ କହିଲା, "ଭାଇ ! ଦେବୀ ତୁମପ୍ରତି ବଡ଼ ସଦୟ ହୋଇ-ଛନ୍ତି । ନୈବେଦ୍ୟ ଧରି ତୁମେ ପ୍ରଥମେ ତାଙ୍କ ପାଖକୁ ଯିବା ସେ ଚାହାନ୍ତି ।"

ଅହିରାବଣ ତତ୍ପର ହୋଇ ଫଳ ପୁଷ୍ପ ଓ ଗୋଟିଏ ସୁବର୍ଣ୍ଣ ପାତ୍ରରେ ମଧୁ ଧରି ନିଜର ବିଶାଳ ଦେହକୁ ଧୀରେ ଧୀରେ ଦେବୀଙ୍କ ଗୃହ ଭିତରକୁ ନେଇଆସିବା ମାତ୍ରେ ଦ୍ୱାର ପାଖରେ ଛକି ରହିଥିବା ହନୁମାନ ଚଟ୍‌କିନା କବାଟ ଭିତରୁ ଖୋଲି ଦେଲେ । ଅହିରାବଣ ଦେବୀମୂର୍ତ୍ତି ଆଗରେ ଆଣ୍ଠେଇପଡ଼ି ନୈବେଦ୍ୟ ତଳେ ରଖୁଛି, ହନୁମାନ ପଛରୁ ତା' ଗଳା ଧରିନେଲେ ଓ

ତାକୁ ତଳକୁ ଦବାଇ ସଙ୍ଗେ ସଙ୍ଗେ ମାରିଦେଲେ। ତା'ପରେ ହନୁମାନ ଫଳତକ ଖାଇ ମଧୁତକ ପିଇଲେ। ଏଥର ସେ ଅନୁଭବ କଲେ ଆହୁରି ଅଧିକ ବଳ।

ଚାରିଆଡ଼କୁ ଆଖି ପକାଇ ହନୁମାନ ଗୋଟାଏ ଅନ୍ଧାରୁଆ କୋଣ ଦେଖି ଅହିରାବଣକୁ ସେହି କୋଣକୁ ଗୋଡ଼ରେ ଫୋପାଡ଼ି ଦେଲେ ଓ ଦ୍ୱାର ଖୋଲି କହିଲେ, "ମହିରାବଣ ! ଏଥର ରାମ ଲକ୍ଷ୍ମଣଙ୍କୁ ଭିତରକୁ ପଠାଅ। ସେମାନଙ୍କ ଉପସ୍ଥିତିରେ ମୋର ଭକ୍ତ ଅହିରାବଣ ମୋର ପୂଜା କରିବ।"



ମହିରାବଣ ଆନନ୍ଦରେ ରାମଲକ୍ଷ୍ମଣଙ୍କୁ ଗର୍ଭଗୃହ ଭିତରକୁ ଠେଲି ପଠାଇ ଦେଲା। ଦେବୀମୂର୍ତ୍ତି ପଛ ପଟରୁ ହନୁମାନ୍ କଣ୍ଠସ୍ୱର ଧୀର କରି କହିଲେ, "ରଘୁବୀର ! କବାଟ ଭିତରୁ ବନ୍ଦ କରିଦେଇ ଆସ !"

ଲକ୍ଷ୍ମଣ ବିସ୍ମୟଭରେ ରାମଙ୍କଆଡ଼କୁ ଅନାଇବାରୁ ରାମ କହିଲେ, "ତୁମେ କ'ଣ ଏପର୍ଯ୍ୟନ୍ତ ରହସ୍ୟ ବୁଝିପାରିନାହଁ ? ଆଗେ କବାଟର ଅର୍ଗଳ ବନ୍ଦ କର।" ଲକ୍ଷ୍ମଣ ତାହାହିଁ କଲେ। ମୂର୍ତ୍ତି ପଛରୁ ଶବ୍ଦ ଶୁଭିଲା : "ଟିକିଏ ଏ ପଟକୁ ଆସନ୍ତୁ।"

ରାମଲକ୍ଷ୍ମଣ ମୂର୍ତ୍ତି ପଛକୁ ଗଲେ। ସେଠାରେ ହନୁମାନଙ୍କୁ ଦେଖି ଦୁହେଁ ଗଭୀର ହର୍ଷ ପ୍ରକାଶ କଲେ। ହନୁମାନ ବି ଉତ୍‌ଫୁଲ୍ଲ ହସିଲେ।

"ଲକ୍ଷ୍ମଣ ! ଯେଉଁ ମୁହୂର୍ତ୍ତରେ ମୁଁ ଶୁଣିଲି ଦେବୀ ମଦ୍ୟ ବଦଳରେ ଦୁଗ୍‌ଧପାନ କରିବାକୁ ଚାହୁଁଛନ୍ତି, ସେତିକବେଳଠୁଁ ମୁଁ ବୁଝିଲିଣି ଯେ ଆମେ ହନୁମାନଙ୍କୁ ଭେଟିବାକୁ ଯାଉଛୁଁ।" ରାମ କହିଲେ।

ସେତେବେଳକୁ ଯାଇ ଲକ୍ଷ୍ମଣଙ୍କ ଆଗରେ ସବୁ ପରିଷ୍କାର ହୋଇଗଲା। କାଳୀଙ୍କ ମୂର୍ତ୍ତି ଆଗରେ ପୂଜା ସକାସେ ରକ୍ଷିତ ଥିବା ଧନୁ ଓ ଶରକୁ ହନୁମାନ ରାମଲକ୍ଷ୍ମଣଙ୍କୁ ଦେଖାଇ ଦେବାରୁ ସେସବୁ ଦୁହେଁ ହାତକୁ ନେଲେ। ହନୁମାନ ନିଜ କଳେବର ବିସ୍ତାର କରି ରାମ-



ଦେଇ ଭିତରକୁ ଅନାଇଲା । ଦେଖିଲା, ଉପରୁ ଢଳା ହୋଇଥିବା ଦୁଧ କାହିଁ କେଉଁଠି ଦିଶୁ-ନାହିଁ । କୌଣସି ଭୟଙ୍କର ଶତ୍ରୁ ହୁଏତ ଭିତରେ ପଶିଛି, ବର୍ତ୍ତମାନ ତା'ର ଏଇ ଧାରଣା ହେଲା ।

ଏକଥା ଭାବୁଁ ଭାବୁଁ କଣ୍ଟକୀ ଗୋଟାଏ ଭୟ-ସୂଚକ ଧ୍ୱନି କଲା । ରାକ୍ଷସମାନେ ତାକୁ ପଚା-ରିଲେ, "କଥା କ'ଣ ? ତୁମେ ଏମିତି ଚିତ୍କାର କରୁଛ କାହିଁ ? କ'ଣ ଦେଖିଲ ? କାଳୀ ତୁମକୁହିଁ ବଳିରୂପେ ଗୃହ୍ଣୁଁ ନାହାନ୍ତି ତ ?"

"ଆରେ ମୂର୍ଖମାନେ ! ତୁମେମାନେ ଜାଣ-ନାହିଁ, ଆମର କୌଣସି ଭୟଙ୍କର ଅନିଷ୍ଟ ଘଟି-ଲାଣି । ନିଶ୍ଚୟ ଏ ମହଲର କେହି ଶତ୍ରୁପକ୍ଷ ସହ ଷଡ଼ଯନ୍ତ୍ର କରିଛି । ଚନ୍ଦ୍ରସେନା ଛଡ଼ା ଆଉ କିଏ ବା ସେ କାମ କରିଥାଇପାରେ ! ତାକୁ ବାଡ଼େ-ଇଲେ ସେ ସବୁ ମାନିଯିବ ।"

ଏହା କହି କଣ୍ଟକୀ ଅନ୍ତଃପୁର ଆଡ଼କୁ ଦୌଡ଼ିଲା । ତା' କଥା ଶୁଣି ରାକ୍ଷସମାନେ ଚିନ୍ତାରେ ପଡ଼ିଲେ ଓ ପରସ୍ପର ଚୁହାଁ ଚୁହିଁ ହେଲେ । ସତରେ କ'ଣ ମନ୍ଦିର ଭିତରେ କୌଣସି ଶତ୍ରୁ ଆସି ପଶିଅଛି ? ମହିରାବଣର ପୁରରେ ପଶିବାର ଦୁଃସାହସ କରିବ, ଏଭଳି ବଳଯୁକ୍ତ କିଏ ?"

କେତେଜଣ ସାହସୀ ରାକ୍ଷସ ଗର୍ଭଗୃହ ଆଡ଼କୁ ଅଗ୍ରସର ହେଲେ । ସେମାନେ କବାଟ ଖୋଲ-

ଲକ୍ଷ୍ମଣଙ୍କୁ ଟେକିନେଇ ନିଜ କାନ୍ଧରେ ବସା-ଇଲେ ଓ ବାକି ଖିରସବୁକୁ ଉଠାଇନେଇ ହାତରେ ଧରିଲେ ।

ଗର୍ଭଗୃହ ବାହାରେ ପୁଣି ରାକ୍ଷସମାନଙ୍କ କୋଳାହଳ ଶୁଭିଲା । ସେମାନେ ରାମଲକ୍ଷ୍ମଣଙ୍କ ବଳି ଦେଖିବା ପାଇଁ ଆଗ୍ରହାନ୍ୱିତ ହୋଇ ରହି-ଥା'ନ୍ତି । ତେଣେ ସମୟ ବିତି ଯାଉଥାଏ । ଅଥଚ ରାମଲକ୍ଷ୍ମଣଙ୍କୁ ଅହିରାବଣ ବାହାରକୁ ଆଣୁ ନ ଥାଏ । ଯୂପକାଷ୍ଠ ଥିଲା ଅଗଣାରେ ।

ପ୍ରଥମେ କଣ୍ଟକୀ ମନରେହିଁ ସନ୍ଦେହ ହେଲା କି ଗର୍ଭଗୃହ ଭିତରେ କୌଣସି ରହସ୍ୟମୟ ବ୍ୟାପାର ଘଟୁଛି । ସେ ପ୍ରଥମେ କବାଟର ଛିଦ୍ର

ବାଲୁ ଉଦ୍ୟତ ହେବା ବେଳକୁ ହନୁମାନ ଗୋଇଠା ମାରି କବାଟ ଭାଙ୍ଗି ଦେଇ ବାହାରି ଆସିଲେ ।

ରାକ୍ଷସମାନେ ଚିତ୍କାର କଲେ, "ଆରେ, ଇଏ କିଏ ? ଏତେ ବଡ଼ ଦଗାବାଜ ସମ୍ଭବ ହେଲା କିପରି ?"

ହନୁମାନଙ୍କ କାନ୍ଧରେ ବସି ରାମଲକ୍ଷ୍ମଣ ଶର ବର୍ଷଣ କରିବାକୁ ଲାଗିଲେ । ରାକ୍ଷସମାନେ ଆର୍ତ୍ତ-ନାଦ କରି ଯିଏ ଯୁଆଡ଼େ ପାରିଲେ ପଳାଇଲେ ।

ମହିରାବଣ ଚମକି ପଡ଼ି ଅନାଇଲା । ସେ ରାମଲକ୍ଷ୍ମଣଙ୍କୁ ହନୁମାନ କାନ୍ଧରେ ବସି ଅଗ୍ରସର ହେଉଥିବାର ଦେଖି ଧନୁଶର ତୋଳି ଯୁଦ୍ଧ ପାଇଁ ହୁଙ୍କାର ଦେଲା । ରାମଲକ୍ଷ୍ମଣ ମଧ୍ୟ କାଳ ବିଳମ୍ବ ନ କରି ତା' ଉପରକୁ ଶର ନିକ୍ଷେପ କଲେ । ସେ ରକ୍ତାକ୍ତ ହେଲା । ତା' ରକ୍ତରୁ ଏକ ଏକ ମହିରାବଣ ସୃଷ୍ଟି ହୋଇ ତାହାରି ଭଳି ଲଢ଼େଇ ପାଇଁ ବାହାରିଲେ ।

"ଏତେଗୁଡ଼ିଏ ମହିରାବଣଙ୍କୁ ବଧ କରିବା କିପରି ? ଇଏ ତ ବଡ଼ ବିଚିତ୍ର ଅବସ୍ଥା !" ରାମ ଲକ୍ଷ୍ମଣ କହିଲେ ।

ହନୁମାନ ସୁବର୍ଚ୍ଚଳା ଦେବୀଙ୍କ କଥା ମନେ ପକାଇଲେ । ସେ ଚନ୍ଦ୍ରସେନାଙ୍କ ସମ୍ପର୍କରେ ଯାହା ଶୁଣିଥିଲେ ତାହା ସଂକ୍ଷେପରେ ରାମ ଲକ୍ଷ୍ମଣଙ୍କୁ ଜଣାଇଲେ ଓ ଉଡ଼ିଯାଇ ଗୋଟିଏ ପର୍ବତ ଉପରେ ରାମ ଲକ୍ଷ୍ମଣଙ୍କୁ ଅବତରଣ କରାଇ ନିଜେ ସୁବର୍ଚ୍ଚଳା ଦେବୀଙ୍କ ଭବନ ଆଡ଼କୁ ଉଡ଼ିଗଲେ ।

ଅଗଣିତ ମହିରାବଣ ଉପରେ ରାମ ଲକ୍ଷ୍ମଣ ଅନବରତ ଶରବର୍ଷା କରିଚାଲିଲେ ।

ଏହି ଅଦ୍ଭୁତ ଘଟଣାରେ ରାକ୍ଷସମାନଙ୍କ ମଧ୍ୟରେ ନାହିଁ ନ ଥିବା ଆଲୋଡ଼ନର ସୃଷ୍ଟି ହୋଇଥାଏ । ପାତାଳପୁରରେ ଏଭଳି ଘଟଣା କୌଣସିକାଳେ ଘଟି ନ ଥିଲା । ରାକ୍ଷସମାନଙ୍କ କୋଳାହଳରେ ଚତୁର୍ଦ୍ଦିଗ କମ୍ପି ଉଠୁଥାଏ ।





# ସର୍ଦ୍ଦାର ପଟେଲ

ପ୍ରାୟ ଏକ ଶତାବ୍ଦୀ ଆଗେ, ୧୮୭୫ ଅକ୍ଟୋବର ୩୧ରେ ଗୁଜରାଟର କରମସଦ୍ ନାମକ ଗ୍ରାମରେ ଆଧୁନିକ ଭାରତର ଅନ୍ୟତମ ନିର୍ମାତା ବଲ୍ଲଭ ଭାଇ ପଟେଲ ଜନ୍ମଗ୍ରହଣ କରିଥିଲେ ।

ତାଙ୍କର ଦୃଷ୍ଟି ଥିଲା ଆଗକୁ । ବହୁ କଷ୍ଟ ଭିତରେ ସେ ପାଠ ପଢ଼ି ଜଣେ ଓକିଲ ହେଲେ । ତାଙ୍କର ଆଗ୍ରହରେ ତାଙ୍କ ବଡ଼ ଭାଇ ବିଠଲ ଭାଇ (ସେ ମଧ୍ୟ ସ୍ୱାଧୀନତା ସଂଗ୍ରାମର ଜଣେ ପୁରୋଧା ଭାବେ ସ୍ମରଣୀୟ) ଲଣ୍ଡନ ଯାଇ ବାରିଷ୍ଟର୍ ହେଲେ । ପରେ ପରେ ବଲ୍ଲଭ ଭାଇ ମଧ୍ୟ ବାରିଷ୍ଟର୍ ହୋଇ ଆସି ଅହମଦାବାଦ୍‌ରେ ଆଇନ୍ ବ୍ୟବସାୟ କଲେ ।





ସେତିକିବେଳେ ଗାନ୍ଧିଜୀ ଦକ୍ଷିଣ ଆଫ୍ରିକାରୁ ଫେରି ଆସିଥା'ନ୍ତି । ସେ ଅହମଦାବାଦ୍ ଆସି ଗୁଜରାଟ କ୍ଲବ୍‌ରେ ଭାଷଣ ଦେଉଥିବା ବେଳେ ବଲ୍ଲଭଭାଇ ପାଖ କୋଠରୀରେ ବସି ତାସ ଖେଳୁଥା'ନ୍ତି । ଅର୍ଥାତ୍, ସ୍ୱାଧୀନତା ଆନ୍ଦୋଳନ ପ୍ରତି ତାଙ୍କର ସେତେବେଳେ ଆଗ୍ରହ ନ ଥିଲା ।



କିନ୍ତୁ ଯୁବକ, ବାରିଷ୍ଟର୍ ବେଶି ଦିନ ଗାନ୍ଧିଜୀଙ୍କ ପ୍ରଭାବରୁ ମୁକ୍ତ ରହି ପାରିଲେ ନାହିଁ । ସେତେବେଳେ ଗୁଜରାଟର ଚମ୍ପାରଣ ଅଞ୍ଚଳରେ ନୀଳଚାଷ ହେଉଥାଏ । କ୍ଷେତ ଓ କାରଖାନାର ମାଲିକମାନେ ଗରିବ ଚାଷୀଙ୍କୁ ଭୟଙ୍କର ଭାବେ ଶୋଷଣ କରୁଥା'ନ୍ତି । ଗାନ୍ଧିଜୀ ଚାଷୀମାନଙ୍କ ସ୍ୱାର୍ଥ ରକ୍ଷା ପାଇଁ ସେଠାରେ ଆନ୍ଦୋଳନ ଆରମ୍ଭ କଲେ । ତାଙ୍କ ଆଦର୍ଶ ବଲ୍ଲଭଭାଇଙ୍କୁ ଅନୁପ୍ରାଣିତ କଲା ।



ଖେଡା ଜିଲ୍ଲାରେ ଦେଖା ଦେଲା ଦୁର୍ଭିକ୍ଷ । ବୁଭୁକ୍ଷୁ ଲୋକଙ୍କ ପାଖରୁ ସରକାର କର ଆଦାୟ କରିବାକୁ କୁଣ୍ଠାବୋଧ କଲେ ନାହିଁ । ଗାନ୍ଧିଜୀ ସେଠାରେ ସତ୍ୟାଗ୍ରହ ଆରମ୍ଭ କଲେ । ବଲ୍ଲଭଭାଇ ହେଲେ ତାଙ୍କ ଡାହାଣ ହାତ । "ବଲ୍ଲଭଭାଇ ବିନା ଏ ଆନ୍ଦୋଳନ ସଫଳ ହୋଇ ନ ଥା'ନ୍ତା ।" ଗାନ୍ଧିଜୀ କହିଲେ ।



ଯଥାଶୀଘ୍ର ବଲ୍ଲଭଭାଇ ଜଣେ ଦେଶପ୍ରେମୀ ନେତା ଭାବରେ ବିଖ୍ୟାତ ହୋଇ ଉଠିଲେ । ୧୯୨୦ର ଅସହଯୋଗ ଆନ୍ଦୋଳନରେ ଓ ୧୯୨୮ରେ ବର୍ଦୋଲିର କୃଷକ ଆନ୍ଦୋଳନରେ ତାଙ୍କ ଦକ୍ଷ ନେତୃତ୍ୱ ପ୍ରମାଣିତ ହେଲା । ୧୯୩୧ରେ କଂଗ୍ରେସର କରାଚି ଅଧିବେଶନରେ ସେ ସଭାପତି ହେଲେ । ପରେ ପରେ ସେ ଗିରଫ ହୋଇ ଗାନ୍ଧିଜୀଙ୍କ ସହ ୟରୱଡା ଜେଲ୍‌ରେ କିଛି କାଳ କଟାଇଲେ ।



ଭାରତର ନେତୃବର୍ଗଙ୍କ ସହ ଆଲୋଚନା ନ କରି ବ୍ରିଟିଶ୍ ସରକାର ଦ୍ୱିତୀୟ ମହାଯୁଦ୍ଧରେ (୧୯୩୯) ଭାରତକୁ ନିଜ ପକ୍ଷଭୁକ୍ତ ବୋଲି ଘୋଷଣା କଲେ । "ଆମେ ସ୍ୱରାଜ ନ ପାଇଲେ ଯୁଦ୍ଧରେ ଯୋଗ ଦେବୁଁ ନାହିଁ" ବୋଲି କଂଗ୍ରେସ ନେତାମାନେ କହିଲେ । ସର୍ଦ୍ଧାର ପଟେଲ "ଭାରତ ଛାଡ଼" ପ୍ରସ୍ତାବ ଆଗତ କଲେ ।



ଗାନ୍ଧିଜୀ, ସର୍ଦ୍ଧାର ପଟେଲ, ନେହେରୁ ପ୍ରମୁଖ ନେତାମାନେ ଗିରଫ ହେଲେ । ଲୋକଙ୍କ ପ୍ରତିବାଦକୁ ସରକାର ହିଂସ୍ର ଦମନ ନୀତି ଦ୍ୱାରା ସାମ୍ନା କଲେ । ଗୁଳିଗୁଳା ଚାଲିଲା । ଲୋକେ ନାନା ପ୍ରକାରେ ନିର୍ଯାତିତ ହେଲେ ।



ଅବଶେଷରେ, ଦୀର୍ଘ ସଂଗ୍ରାମ ଓ ତ୍ୟାଗ ପରେ ୧୯୪୭ ଅଗଷ୍ଟ ପନ୍ଦର ଦିନ ଭାରତ ସ୍ୱାଧୀନତା ହାସଲ କଲା । ୧୯୦ ବର୍ଷର ବ୍ରିଟିଶ୍ ଶାସନ ଉପରେ ଯବନିକା ପଡ଼ିଲା । ନେହେରୁ ପ୍ରଧାନ ମନ୍ତ୍ରୀ ଓ ସର୍ଦ୍ଧାର ପଟେଲ୍ ଉପ-ପ୍ରଧାନ ମନ୍ତ୍ରୀ ହେଲେ ।

କିନ୍ତୁ ସର୍ଦ୍ଦାର ପଟେଲ ସ୍ୱାଧୀନତା ପ୍ରାପ୍ତିକୁ ଲକ୍ଷ୍ୟପୂର୍ତ୍ତି ଭାବରେ ଦେଖୁ ନ ଥିଲେ— ଦେଖୁଥିଲେ ବହୁ ସମସ୍ୟା ଓ ଦାୟିତ୍ୱପୂର୍ଣ୍ଣ ଏକ ନୂଆ ଯୁଗର ଆରମ୍ଭ ରୂପେ । ସ୍ୱାଧୀନତା ଲଭର ଅବ୍ୟବହିତ ପୂର୍ବରୁ ଓ ପରେ ଦାରୁଣ ସାମ୍ପ୍ରଦାୟିକ ଦଙ୍ଗାରେ ଦେଶ ପୀଡ଼ିତ ହେଲା । ସର୍ଦ୍ଦାର ପଟେଲ ସେତେବେଳେ ଗମ୍ଭୀର ଧୈର୍ଯ୍ୟ ଓ ବୁଦ୍ଧିମତ୍ତା ସହକାରେ ଅବସ୍ଥାକୁ ଆୟତ୍ତ କଲେ ।





ଭାରତରେ ପ୍ରାୟ ଛଅ ଶହ କରଦ ରାଜ୍ୟ ରହିଥିଲା । ବ୍ରିଟିଶ୍ ଚାଲିଗଲେ ସ୍ୱାଧୀନ ହୋଇଯିବେ ବୋଲି କେହି କେହି ରାଜା ସ୍ୱପ୍ନ ଦେଖୁଥିଲେ । କିନ୍ତୁ ସର୍ଦ୍ଦାର ପଟେଲଙ୍କ ବିଚକ୍ଷଣତା ଯୋଗୁଁ ସବୁ ରାଜ୍ୟ ଭାରତର ଅବିଭାଜ୍ୟ ଅଂଶ ହୋଇ ରହିବାକୁ ସ୍ୱୀକୃତ ହେଲେ ।

ଏକ ଗୌରବମୟ ଜୀବନଯାପନ କରି ଭାରତମାତାଙ୍କ ବରପୁତ୍ର ସର୍ଦ୍ଦାର ପଟେଲ ୧୯୫୦ରେ ଦେହ ତ୍ୟାଗ କଲେ । ଭାରତର ସ୍ୱାଧୀନତା ଲଭ ଦିଗରେ ତାଙ୍କ ଅବଦାନ ଅତୁଳନୀୟ । ୪୦ ମାସ କ୍ଷମତାରେ ଥିବା ଭିତରେ ସେ ଦେଶର ଅମାପ କଲ୍ୟାଣ ସାଧନ କରିଥିଲେ ।



# କାହାଣୀ-ଶିରୋନାମା-ପ୍ରତିଯୋଗିତା

## ଏକ ଉପଯୁକ୍ତ ଶିରୋନାମା ଦେଇ ୨୫ ଟଙ୍କା ପୁରସ୍କାର-ବିଜୟୀ ହୁଅନ୍ତୁ

?

ସମୁଦ୍ର ଭିତରେ ଠାଏଁ ଏକଦା ଗୋଟିଏ ଶ୍ରେଷ୍ଠ ଦ୍ୱୀପ ଥିଲା ବୋଲି ନାବିକ ଓ ସୌଦାଗରମାନେ ଜାଣିଥିଲେ । କିନ୍ତୁ ବହୁକାଳ ହେଲା ସେ ଦ୍ୱୀପକୁ କେହି ଆଉ ଦେଖି ନ ଥିଲେ ।

ହଠାତ୍ ଦିନେ ସନ୍ଧ୍ୟାବେଳେ ଗୋଟିଏ ଜାହାଜର ନାବିକମାନେ ପୁଣି ସେ ଦ୍ୱୀପଟି ଦେଖି ପାରି ପାଖକୁ ଜାହାଜ ନେଲେ ଓ ଦ୍ୱୀପ ଭିତରକୁ ଗଲେ । ସେ ଦ୍ୱୀପ ବାସିନ୍ଦାଙ୍କ ବିଷୟରେ ସେମାନେ ପୂର୍ବରୁ ଯେଉଁ ବର୍ଣ୍ଣନା ଶୁଣିଥିଲେ, ଦେଖିଲେ ଲୋକେ ଠିକ୍ ସେହିପରି ଚଳପ୍ରଚଳ ହେଉଛନ୍ତି ।

କିନ୍ତୁ ନାବିକମାନେ ଯେତେ ଯାହା କଲେ ବି ଦ୍ୱୀପର ବାସିନ୍ଦାଙ୍କ ଭିତରୁ କାହାର ଦୃଷ୍ଟି ଆକର୍ଷଣ କରି ପାରିଲେ ନାହିଁ । ଏପରିକି ନାବିକମାନେ କୌଣସି ଦ୍ୱୀପବାସୀଙ୍କୁ ଧରିବାକୁ ଚେଷ୍ଟା କଲେ ମଧ୍ୟ ଧରିବା ତ ଦୂରର କଥା, ସେମାନଙ୍କୁ ଛୁଇଁ ପାରିଲେ ନାହିଁ ।

ଶେଷକୁ ଜାହାଜ କ୍ୟାପ୍‌ଟେନ୍ ଯାଇ ଦ୍ୱୀପର ରାଜଦରବାରରେ ପହଞ୍ଚିଲେ ଓ ପାଖକୁ ଯାଇ ରାଜାଙ୍କ ଆଖିକୁ ଅନାଇ ରହିଲେ । ରାଜା ହଠାତ୍ ନିଶ୍ଚେଷ୍ଟ ହୋଇ ପଡ଼ିଗଲେ ।

ଦରବାରର ବୈଦ୍ୟ ଆସି ରାଜାଙ୍କୁ ପରୀକ୍ଷା କରି କହିଲେ, "କୌଣସି ଜୀବିତ ଲୋକର ପ୍ରଭାବ ପଡ଼ିବାରୁ ରାଜା ଏପରି ହୋଇଛନ୍ତି ।"

ନାବିକମାନେ ପଳାଇ ଆସି ଜାହାଜ ଛାଡ଼ି ଦେଲେ । ପଛକୁ ଅନାଇ ସେମାନେ ଦେଖିଲେ, ଦ୍ୱୀପଟି ଅଦୃଶ୍ୟ ହୋଇଯାଇଛି !

  

ଉପରୋକ୍ତ କାହାଣୀ ପାଇଁ ଉପଯୁକ୍ତ ଶିରୋନାମାଟିଏ ଠିକ୍ କରି ପୋଷ୍ଟକାର୍ଡ଼ରେ ଲେଖି "ଶିରୋନାମା ପ୍ରତିଯୋଗିତା", ଜହ୍ନମାମୁଁ, Chandamama Buildings, 2 & 3 Arcot Road, Madras-600026 ଠିକଣାରେ ଜୁନ୍ ୧୦ ତାରିଖ ସୁଦ୍ଧା ପଠାନ୍ତୁ । ତେବେ, ଫଟୋ ପରିଚୟ ପ୍ରତିଯୋଗିତା ପାଇଁ ଲେଖା ଏକା କାର୍ଡ଼ରେ ପଠାଇବେ ନାହିଁ ।

ପ୍ରତିଯୋଗିତାର ଫଳ ଅଗଷ୍ଟ' ୭୭ ସଂଖ୍ୟାରେ ପ୍ରକାଶ ପାଇବ ।

---

ଏପ୍ରିଲ ପ୍ରତିଯୋଗିତାର ନିର୍ବାଚିତ ଶିରୋନାମା : "ଓଲୁଅ ଛାଆରେ ବଣ ସାରୁକୁ !"

ପୁରସ୍କାର ବିଜୟୀ : ଜୟକୃଷ୍ଣ ସାହୁ, ଭୁବନେଶ୍ୱର ।

# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ୨୫

## ପୁରସ୍କୃତ ପରିଚୟୋକ୍ତି ଅଗଷ୍ଟ ୧୯୭୭ ସଂଖ୍ୟାରେ ପ୍ରକାଶ ପାଇବ







- ★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଚାରି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ।
- ★ ଜୁନ୍ ୧୫ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର ।
- ★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ ୨୫.୦୦ ପୁରସ୍କାର ପଠାଯିବ ।
- ★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡ଼ରେ ଲେଖା ହୋଇ (ସେଥିରେ ଅନ୍ୟ କଥା ରହିବା ଅନୁଚିତ) ଜହ୍ନମାମୁଁ ଫୋଟୋ ପରିଚୟ ପ୍ରତିଯୋଗିତା, ଚନ୍ଦାମାମା ବିଲ୍ଡିଙ୍ଗ୍, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

## ଏପ୍ରିଲ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : "ଓଡ଼ିଶା ମୁଲକ ଟିକି ପାଇକ ମୁଁ, ଦେଖ ମୋର ଘୋଡ଼ା ଚାଲେରେ !"

ଦ୍ୱିତୀୟ ଚିତ୍ର : "ଏ ନୂଆ ଯୁଗର ନୂଆ ସନ୍ତୀ ଆମେ, ଯୋରେ ଭିଡ଼ି ଗାଡ଼ି ଠେଲ୍‌ରେ !"

ପ୍ରେରକ : ମନୁରଂଜନ ଦାସ, ବାଲେଶ୍ୱର ।

ବିଜୟୀଙ୍କୁ ଅଭିନନ୍ଦନ : ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।

Printed by B. V. REDDI at Prasad Process Private Ltd., and Published by B. VISWANATHA